# ସୃଷ୍ଟି ଓ ସମୀକ୍ଷା

( ସାଧୁ ସୁନ୍ଦର ଦାସ ଓ କୁଜୀବର ପଣ୍ଡା )

୧୯୯୮-୯୯




ସମ୍ପାଦନା :

**ଡଃ ମହେଶ୍ୱର ମହାନ୍ତି**
ରିଡ଼ର ଓ ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ

**ଓଡ଼ିଆ ସାହିତ୍ୟ ସମାଜ**
**ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ**

Digitized by PPRACHIN, SOA

# ଓଡ଼ିଆ ସାହିତ୍ୟ ସମାଜ

ସଭାପତି :

**ଶ୍ରୀ ଅସିତ କୁମାର ବୋଷ,** ଏମ୍. ଏସ୍. ସି

ଅଧ୍ୟକ୍ଷ, ଖ୍ରୀଷ୍ଟ ମହାବିଦ୍ୟାଳୟ

ଉପ-ସଭାପତି ଓ ମୁଖ୍ୟ ସମ୍ପାଦକ :

**ଡଃ ମହେଶ୍ୱର ମହାନ୍ତି**

ରିଡ଼ର ଓ ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ

ସମ୍ପାଦନା ମଣ୍ଡଳୀ :

୧। ଶ୍ରୀ ଭାସ୍କରଚନ୍ଦ୍ର ଖଟାଇ, ରିଡ଼ର

୨। ଡଃ ପ୍ରଫୁଲ୍ଲ କୁମାର ଦାଶ, ରିଡ଼ର

୩। ଡଃ ପ୍ରାଣରଞ୍ଜନ ଦାସ, ରିଡ଼ର

୪। ଡଃ ସୁରେନ୍ଦ୍ରନାଥ ଆଚାର୍ଯ୍ୟ, ଅଧ୍ୟାପକ

୫। ଡଃ କୃତ୍ତିବାସ ଷଡ଼ଙ୍ଗୀ, ଅଧ୍ୟାପକ

୬। ଶ୍ରୀ ଦୈତ୍ୟାରି ଶୁକ୍ଳ, ଅଧ୍ୟାପକ

୭। ଡଃ ପ୍ରଦୀପ କୁମାର ଧଳ, ଅଧ୍ୟାପକ

ମୁଦ୍ରଣ : ଗୀତାଞ୍ଜଳି ପ୍ରେସ, କଟକ-୨

Digitized by PPRACHIN, SOA

# ସୂଚୀ



Digitized by PPRACHIN, SOA

ଏ ପର୍ଯ୍ୟନ୍ତ ପ୍ରକାଶ ପାଇଥିବା

# 'ସୃଷ୍ଟି ଓ ସମୀକ୍ଷା'ର ବିଭିନ୍ନ ସଂଖ୍ୟା

୧୯୭୦-୭୧ ଶିକ୍ଷାବର୍ଷଠାରୁ 'ସୃଷ୍ଟି ଓ ସମୀକ୍ଷା' ନାମରେ ଓଡ଼ିଆ ସାହିତ୍ୟ ସମାଜ ତରଫରୁ ଏକ ଗବେଷଣାଧର୍ମୀ ବାର୍ଷିକ ମୁଖପତ୍ର ପ୍ରକାଶ ପାଇ ଆସୁଅଛି । ବିଭିନ୍ନ କାରଣରୁ ଏହାର ନିୟମିତ ପ୍ରକାଶନ ବିଘ୍ନିତ ହୋଇଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ଚଳିତ ସଂଖ୍ୟାଟିକୁ ମିଶାଇ ମୋଟ ୨୦ଟି ସଂଖ୍ୟା ପ୍ରକାଶ ପାଇଛି । ସଂଖ୍ୟାଗୁଡ଼ିକର ସୂଚନା ନିମ୍ନରେ ପ୍ରଦାନ କରାଗଲା ।

୧ । ୧୯୭୦-୭୧ ବିଭିନ୍ନ ବିଷୟକ ଏକ ମିଳିତ ସଂଖ୍ୟା
୨ । ୧୯୭୧-୭୨ ବିଭିନ୍ନ ବିଷୟକ ଏକ ମିଳିତ ସଂଖ୍ୟା
୩ । ୧୯୭୨-୭୩ ଭଞ୍ଜ ବିଶେଷାଙ୍କ
୪ । ୧୯୭୩-୭୪ କ୍ଷୁଦ୍ରଗଳ୍ପ ବିଶେଷାଙ୍କ
୫ । ୧୯୭୪-୭୫ ନାଟକ ବିଶେଷାଙ୍କ
୬ । ୧୯୭୫-୭୬ ଅଭିମନ୍ୟୁ ସାମନ୍ତସିଂହାର ବିଶେଷାଙ୍କ
୭ । ୧୯୭୬-୭୭ ଧର୍ମ ବିଶେଷାଙ୍କ
୮ । ୧୯୭୭-୭୮ ପୁରାଣ ବିଶେଷାଙ୍କ
୯ । ୧୯୭୮-୭୯ ସାହିତ୍ୟରେ ବିଭିନ୍ନ 'ବାଦ' (ism) ବିଶେଷାଙ୍କ
୧୦ । ୧୯୭୯-୮୦ ଭାଷାତତ୍ତ୍ୱ ବିଶେଷାଙ୍କ
୧୧ । ୧୯୮୦-୮୧ ଭକ୍ତକବି ମଧୁସୂଦନ ବିଶେଷାଙ୍କ
୧୨ । ୧୯୮୧-୮୨ ଫକୀରମୋହନ ବିଶେଷାଙ୍କ
୧୩ । ୧୯୮୨-୮୩ ସାରଳା ଦାସ ବିଶେଷାଙ୍କ
୧୪ । ୧୯୮୫-୮୬ ବଳରାମ ଦାସ ବିଶେଷାଙ୍କ
୧୫ । ୧୯୮୬-୮୭ ବିଜୟ ଚନ୍ଦ୍ର ମଜୁମଦାରଙ୍କ କୃତ 'Typical Selections from Oriya Literature'ର ମୁଖବନ୍ଧର ପୁନଃମୁଦ୍ରଣ
୧୬ । ୧୯୯୦-୯୧ ଉପନ୍ୟାସ ବିଶେଷାଙ୍କ
୧୭ । ୧୯୯୩-୯୪ ରାଧାନାଥ ବିଶେଷାଙ୍କ
୧୮ । ୧୯୯୬-୯୭ ଲୋକସାହିତ୍ୟ ବିଶେଷାଙ୍କ
୧୯ । ୧୯୯୭-୯୮ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଲିଖିତ 'ଭକ୍ତକବି ମଧୁସୂଦନ' ଓ 'ସ୍ତୁତି ଅର୍ଘ୍ୟ'ର ପୁନଃମୁଦ୍ରଣ
୨୦ । ୧୯୯୮-୯୯ ସାଧୁ ସୁନ୍ଦର ଦାସ ଓ କୁଞ୍ଜବର ପତ୍ର



Digitized by PPRACHIN, SOA



ସାଧୁ ସୁନ୍ଦର ଦାସ

( ୧୭୨୦—୧୮୩୮ )

Digitized by PPRACHIN, SOA

# ଉପକ୍ରମଣିକା

## ବିପ୍ଳବୀ ସାଧୁ ସୁନ୍ଦର

ସାଧୁ ସୁନ୍ଦର ଦାସଙ୍କ ନାମ କେବଳ "କୁଜଙ୍ଗବର ପତ୍ର" ମଧ୍ୟରେ ସୀମିତ ହୋଇ ରହିଗଲା । "କୁଜଙ୍ଗବର ପତ୍ର" ହେଉଛି ପ୍ରଥମ ଓଡ଼ିଆ ହାତଲେଖା ସମ୍ବାଦପତ୍ର ଏବଂ ସାଧୁ ସୁନ୍ଦର ଥିଲେ ତାର ସମ୍ପାଦକ; କିନ୍ତୁ ସାଧୁ ସୁନ୍ଦର ଯେ ୧୮ଶ ଶତାବ୍ଦୀର ଶେଷାର୍ଦ୍ଧ ଓ ୧୯ଶ ଶତାବ୍ଦୀର ପ୍ରଥମାର୍ଦ୍ଧର ମଧ୍ୟବର୍ତ୍ତୀ କାଳରେ ଓଡ଼ିଶାର ଶିକ୍ଷା, ସଂସ୍କାର ଓ ଧର୍ମ ଆନ୍ଦୋଳନ କ୍ଷେତ୍ରରେ ଜଣେ ବିପ୍ଳବୀ ପୁରୁଷ ଥିଲେ, ତାହା ସାଧାରଣ ଲୋକଙ୍କର ଅଜ୍ଞାତ ଅଟେ । ସେ କାଳରେ ତାଙ୍କ ସମ୍ପର୍କରେ ବିଲାତରେ ଆଲୋଚନା କରାଯିବା ଓ ବ୍ରିଟିଶ ସରକାର ଓଡ଼ିଶାରେ ପ୍ରାଥମିକ ଶିକ୍ଷାର ପ୍ରସାର ନିମନ୍ତେ ତାଙ୍କୁ 'ଶିକ୍ଷା ସୁପରିଣ୍ଟେଣ୍ଡେଣ୍ଟ' ଭାବରେ ଦାୟିତ୍ୱ ନେବା ପାଇଁ ଅନୁରୋଧ କରିବା, ପୁଣି ହିନ୍ଦୁ ଧର୍ମର ପ୍ରଚଳିତ କେତେଗୁଡ଼ିଏ ଅଯୌକ୍ତିକତା ବିରୋଧରେ ସେ ଦୃଢ଼ଭାବରେ ସ୍ୱର ଉତ୍ତୋଳନ କରି ଜାତି, ଧର୍ମ ନିର୍ବିଶେଷରେ ଏକ ମାନବଧର୍ମୀ, ସମନ୍ୱୟବାଦୀ ଧର୍ମର ପ୍ରତିଷ୍ଠା ନିମନ୍ତେ ଉଦ୍ୟମ କରୁଥିବାରୁ ମିଶନାରୀ-ମାନେ ତାଙ୍କୁ ଯୀଶୁଖ୍ରୀଷ୍ଟଙ୍କର ଏକ ଅବତାର (incarnation of Jesus Christ) ବୋଲି କହିବା, ପୁଣି ସତ୍ୟ, ଧର୍ମ ପାଇଁ ନିଜର ସ୍ୱାଧୀନ ମତ ଓ ସ୍ପଷ୍ଟବାଦିତା ଯୋଗୁଁ କାରାରୁଦ୍ଧ ହେବା ଇତ୍ୟାଦି ଘଟଣା ଉତ୍କଳବାସୀଙ୍କ ପାଇଁ କମ ଗୌରବର କଥା ନୁହେଁ । କୁଜଙ୍ଗବର ଠାରେ ସେ ଏକ ବୈଦାନ୍ତିକ ବିଦ୍ୟାଳୟ ଖୋଲିଥିଲେ, ଯେଉଁଠାରେ ଦୂରଦୂରାନ୍ତରୁ ଆସିଥିବା ପ୍ରାୟ ୫୦୦ ଛାତ୍ର ଶିକ୍ଷାଲାଭ କରୁଥିଲେ । ସେହି ବିଦ୍ୟାଳୟଟି ଥିଲା ଗୋଟିଏ କ୍ଷୁଦ୍ର ବିଶ୍ୱବିଦ୍ୟାଳୟ ସ୍ୱରୂପ ।

ସାଧୁଙ୍କର ଜୀବନୀ ଓ ତତ୍‌ସମ୍ପର୍କୀୟ ଆଲୋଚନା ପୁସ୍ତକଗୁଡ଼ିକ ଭାରତ ଓ ଭାରତ ବାହାରେ ବହୁ ବିଶିଷ୍ଟ ଲୋକଙ୍କ ଦ୍ୱାରା ଆଦୃତ

*

Digitized by PPRACHIN, SOA

ହୋଇଅଛନ୍ତି । ସେହି ବିଶିଷ୍ଟ ଲୋକମାନେ ହେଲେ ୧୯୪୧ରୁ ୧୯୪୭ ପର୍ଯ୍ୟନ୍ତ ଓଡ଼ିଶାର ଗଭର୍ଣ୍ଣର ଥିବା ସାର୍ ଉଇଲିୟମ ହଥର୍ଣ୍ଣ ଲୁଇସ୍, ବୈଦେଶିକ ସେକ୍ରେଟେରୀ ରେଭରେଣ୍ଡ ଏଚ୍. ଆର. ଉଇଲିୟମସନ, ପାଟନା ହାଇକୋର୍ଟର ବିଚାରପତି ପି. କେ. ସେନ, ମାନ୍ଦ୍ରାଜର ମେୟର ସି. ଟି. ମୁଦାଲିୟର, ନାଗପୁରର ସୁଶୀଲ ବୋଷ, କଲିକତା ହାଇକୋର୍ଟର ଆଡ଼ଭୋକେଟ ତଥା ଜମିଦାର କ୍ଷିତୀନ୍ଦ୍ରନାଥ ଠାକୁର, ବଙ୍ଗଳାର ଆଡ଼ଭୋକେଟ ଜେନେରାଲ ବାରିଷ୍ଟର ଏସ୍. ଏମ୍. ବୋଷ ଇତ୍ୟାଦି । ଓଡ଼ିଶାର ସେଭଳି ଏକ ବ୍ୟକ୍ତିତ୍ୱ ସାଧାରଣର ଅଗୋଚରରେ ରହିଯିବା ପରିତାପର ବିଷୟ ।

## ସଂସ୍କାରକ ସାଧୁ ସୁନ୍ଦର

ସଂସ୍କାର କ୍ଷେତ୍ରରେ ସାଧୁ ସୁନ୍ଦରଙ୍କୁ ବଙ୍ଗଳାର ରାଜା ରାମମୋହନ ରାୟ ଓ କେଶବଚନ୍ଦ୍ର ସେନଙ୍କ ସହିତ ତୁଳନା କରା-ଯାଇଥାଏ । ସେ ବରଂ ଅଧିକ ଭାବରେ ଜର୍ମାନୀର ମାର୍ଟିନ ଲୁଥର (୧୪୮୩-୧୫୪୬)ଙ୍କ ସହିତ ତୁଳନୀୟ । ମାର୍ଟିନ ଲୁଥର ଧର୍ମ ନାମରେ ସମାଜରେ ପ୍ରଚଳିତ କେତେଗୁଡ଼ିଏ କୁସଂସ୍କାର ଓ ଅନ୍ୟାୟ, ଅନୀତି ବିରୋଧରେ ଦୃଢ଼ତାର ସହ ସ୍ୱର ଉତ୍ତୋଳନ କରିଥିଲେ । ବିଶେଷକରି ଧର୍ମଯାଜକମାନଙ୍କର ମୁକ୍ତିପତ୍ର (Indulgence) ବିକ୍ରିକୁ ସେ ପ୍ରବଳ ଭାବରେ ବିରୋଧ କରିଥିଲେ । ଖ୍ରୀଷ୍ଟଧର୍ମରେ ଥିବା ଦୋଷତ୍ରୁଟିକୁ କାଗଜରେ ଲେଖି ସର୍ବସାଧାରଣ ସ୍ଥାନରେ ଏବଂ ଗୀର୍ଜା ଦୁଆର ମୁହଁରେ ଲଗାଇ ଦେଉଥିଲେ । ଲାଟିନ ଭାଷାରେ ଲିଖିତ ବାଇବେଲକୁ ସରଳ ଜର୍ମାନ ଭାଷାରେ ଅନୁବାଦ କରି ଲୋକଙ୍କୁ ବାଣ୍ଟୁଥିଲେ । ସେଥିପାଇଁ ତାଙ୍କୁ ବହୁ ନିର୍ଯାତନା ଭୋଗ କରିବାକୁ ହୋଇଥିଲା ।

ସାଧୁ ସୁନ୍ଦର ସେଇଭଳି ହିନ୍ଦୁଧର୍ମରେ ପ୍ରଚଳିତ କେତେକ କୁସଂସ୍କାର ତଥା ଔପଚାରିକତା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ନିଜର ପାଣ୍ଡିତ୍ୟପୂର୍ଣ୍ଣ ବିଚାର ବିଶ୍ଳେଷଣକୁ ଲିପିବଦ୍ଧ କରି ଶିଷ୍ୟମାନଙ୍କ ମଧ୍ୟରେ ବାଣ୍ଟିବା ସହିତ ସର୍ବସାଧାରଣ ସ୍ଥାନମାନଙ୍କରେ

Digitized by PPRACHIN, SOA

ମଧ୍ୟ ଝୁଲାଇ ଦେଉଥିଲେ । ଧର୍ମ ସମ୍ବନ୍ଧ ଶିକ୍ଷା, ସମାଜ, ଶାସନ, କୃଷି ଇତ୍ୟାଦି ଭିନ୍ନ ଭିନ୍ନ ବିଷୟରେ ଆଲୋଚନା କରୁଥିଲେ । ଏହି ଆଲୋଚନାଗୁଡ଼ିକ ସେ 'କୁଜାବର ପତ୍ର' ଜରିଆରେ ପ୍ରଚାର କରୁଥିଲେ । ଲୁଥରଙ୍କ ଭଳି ଶହ ଶହ ନରନାରୀ ତାଙ୍କର ଅନୁଗତ ହୋଇ ପଡ଼ୁଥିଲେ । ମିଶନାରୀମାନେ ସ୍ୱଚକ୍ଷୁରେ ଏହା ଦେଖି ସେମାନଙ୍କ ବିବରଣୀରେ ଲିପିବଦ୍ଧ କରିଛନ୍ତି ।

## ଖ୍ରୀଷ୍ଟିୟ ଆଲୋକର ଅଗ୍ରଦୂତ

ସାଧୁ ସୁନ୍ଦରଙ୍କ ମାନବବାଦୀ ଦର୍ଶନ ତଥା ଏକେଶ୍ୱରବାଦୀ ଚିନ୍ତାରେ ଅନୁପ୍ରାଣିତ ହୋଇଥିବା କେତେକ ଶିଷ୍ୟ ପରେ ଖ୍ରୀଷ୍ଟ-ଧର୍ମରେ ଦୀକ୍ଷିତ ହୋଇଥିଲେ । ସେଇମାନେ ଥିଲେ ଓଡ଼ିଶାରେ ପ୍ରଥମ ଧର୍ମାନ୍ତରିତ ବ୍ୟକ୍ତି ଏବଂ ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରସାରର ଭିତ୍ତି ସ୍ଥାପୟିତା । ନଜେ ଆମୋସ ସଟନ ଲେଖିଛନ୍ତି ଯେ ଧର୍ମପ୍ରଚାର ଉଦ୍ଦେଶ୍ୟରେ ମିଶନାରୀମାନେ ୧୮୨୨ ମସିହା ଫେବୃୟାରୀ ମାସରେ ଆସି କଟକଠାରେ ପହଞ୍ଚିଲେ ମଧ୍ୟ ପ୍ରଥମ ଚାରିବର୍ଷ ମଧ୍ୟରେ ଜଣେ ହେଲେ କାହାକୁ ଧର୍ମାନ୍ତରିତ କରିପାରି ନଥିଲେ । ସେମାନେ ନୈରାଶ୍ୟରେ ଭାଙ୍ଗି ପଡ଼ୁଥିବାବେଳେ ସାଧୁ ସୁନ୍ଦର ହିଁ ତାଙ୍କୁ ଆଶାର ଆଲୋକ ଦେଖାଇଥିଲେ । ୧୮୨୭ ମସିହା ଅକ୍ଟୋବର ୧୦ ତାରିଖରେ ସଟନ କଟକରୁ ନିଜର ବନ୍ଧୁମାନଙ୍କ ସହିତ କୁଜାବର ଯାଇ ସେଠାରେ ସାଧୁଙ୍କୁ ସାକ୍ଷାତ କରିଥିଲେ ଓ ତାଙ୍କ ସହିତ ଆଳାପ ଆଲୋଚନାରେ ଖୁବ୍ ପ୍ରଭାବିତ ହୋଇଥିଲେ । ସାଧୁ ସୁନ୍ଦରଙ୍କ ଧର୍ମ-ଦର୍ଶନ ଥିଲା ଖ୍ରୀଷ୍ଟିୟ ଦର୍ଶନର ଅନୁକୂଳ । ସେଇ କାରଣରୁ ତାଙ୍କର ପ୍ରଧାନ ଶିଷ୍ୟ ଗଙ୍ଗାଧର ଷଡ଼ଙ୍ଗୀ ଏବଂ ରାମଚନ୍ଦ୍ର ଜେନା ଯାଚକ ପ୍ରମୁଖ ସାଧୁଙ୍କର ଆଶ୍ରମ ପରିତ୍ୟାଗ କରି ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହୋଇଥିଲେ ।

ସାଧୁ ସୁନ୍ଦର ଥିଲେ ଜଣେ ସ୍ୱାଧୀନଚେତା ତଥା ଦୃଢ଼ମନା ପୁରୁଷ । ସେ ହିନ୍ଦୁଧର୍ମର ପୌତ୍ତଳିକତା ବିରୋଧରେ କଠୋର ବାକ୍ୟ ପ୍ରୟୋଗ କରି ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରସାରର ପଥ ସୁଗମ କରିଦେଇ-ଥିଲେ ମଧ୍ୟ ନିଜେ ଖ୍ରୀଷ୍ଟଧର୍ମ ଗ୍ରହଣ କରି ନଥିଲେ । ଅଧ୍ୟାପକ ସ୍ୱର୍ଗତ

Digitized by PPRACHIN, SOA

ରତ୍ନାକର ପତି ସାଧୁ ସୁନ୍ଦରଙ୍କୁ ପ୍ରଶଂସା କରିବାକୁ ଯାଇ କହିଛନ୍ତି ଯେ ସେ ହିନ୍ଦୁ ଧର୍ମକୁ ଏକ ସଙ୍କଟରୁ ରକ୍ଷା କରିଥିଲେ । ବିଦେଶୀ ଖ୍ରୀଷ୍ଟିୟାନ ଧର୍ମ ଯେତେବେଳେ ଏ ଦେଶକୁ ମାଡ଼ି ଆସୁଥିଲା, ସେତେବେଳେ ସେ ନିଜର ଏକେଶ୍ୱରବାଦୀ ଆଧ୍ୟାତ୍ମିକ ଦର୍ଶନର ପ୍ରଚାର କରି ଭାରତୀୟ ହିନ୍ଦୁ ସଂସ୍କୃତିକୁ ରକ୍ଷା କରିଥିଲେ । ସେଥିପାଇଁ ଉତ୍କଳବାସୀ ତାଙ୍କୁ ଶ୍ରଦ୍ଧା ଓ ସମ୍ମାନର ସହ ସ୍ମରଣ କରିବା ଉଚିତ ।

## ଜଣେ ଅଲୌକିକ ସାଧକ ପୁରୁଷ

ସାଧୁ ସୁନ୍ଦରଙ୍କ ତିରୋଧାନର ଆଜ ୧୭୨ ବର୍ଷ ପରେ ସେ ସ୍ଥାନୀୟ ଭାବେ ଏବଂ ତାଙ୍କର ସୀମିତ ଶିଷ୍ୟ ପରିବାର ମଧ୍ୟରେ ଜଣେ ଅଲୌକିକ ଶକ୍ତି ସମ୍ପନ୍ନ ଦିବ୍ୟ ପୁରୁଷ ଭାବରେ ପୂଜିତ ହେଉଛନ୍ତି । ସାଧନା ପୀଠରେ ତାଙ୍କର ସମାଧି ଅଛି, ମନ୍ଦିର ଅଛି । ସାଧାରଣ ଲୋକେ ତାହାକୁ ଏକ ଦେବାଳୟ ଭଳି ମାନି ସେଠାରେ ଆସି ନିଜର ଭକ୍ତି ନିବେଦନ ଅର୍ପଣ କରୁଛନ୍ତି । ପ୍ରତିବର୍ଷ ବୈଶାଖ ମାସରେ ଦୁଇଶହ ବର୍ଷର ପରମ୍ପରା ରକ୍ଷାକରି ଏକ ମହୋତ୍ସବ ଅନୁଷ୍ଠିତ ହେଉଛି । ଭକ୍ତମାନେ ତାଙ୍କର ଅଲୌକିକ ମହିମାର କାହାଣୀ କୀର୍ତ୍ତନ କରୁଛନ୍ତି । ଆଦ୍ୟ ଜୀବନରେ ସେ ସୈନିକ ଥିବା, ଶିକାର ଅବକାଶରେ ଜଙ୍ଗଲରେ ଶୂନ୍ୟବାଣୀ ଶୁଣି ଅସ୍ତ୍ର ପରିତ୍ୟାଗ କରି ଶାସ୍ତ୍ରକୁ ଆଦରି ନେବା, ବିନା ନୌକାରେ ନଦୀ ପାରି ହେବା, କେତେକ ଘଟଣାରେ ସରକାର ତାଙ୍କୁ କାରାରୁଦ୍ଧ କରିଥିଲେ ମଧ୍ୟ ସର୍ବସାଧାରଣ ରାସ୍ତାରେ ସେ ବୁଲୁଥିବାର ଲୋକେ ଦେଖିବା, ତାହାଙ୍କ କଲ୍ୟାଣରୁ ତାଙ୍କର ଜଣେ ଅନ୍ତରଙ୍ଗ ଶିଷ୍ୟ କଟକ ବକ୍ସି ବଜାରର ସାହୁ ପରିବାର ପୁତ୍ର ସନ୍ତାନ ଲାଭ କରିବା ଇତ୍ୟାଦି ଅନେକ କାହାଣୀ ତାଙ୍କ ସମ୍ପର୍କରେ ପ୍ରଚାର କରାଯାଏ । ତାଙ୍କଠାରେ ଯେ କିଛି ଅଲୌକିକ ଶକ୍ତି ଥିଲା, ଏକଥା ରେଭରେଣ୍ଡ ପୃଙ୍ଗ ସ୍ୱୀକାର କରିଛନ୍ତି । ଆଦ୍ୟ ଜୀବନରେ ଆଠଗଡ଼ ରାଜାଙ୍କ ଅଧୀନରେ ସୈନିକ ଥିବା କଥା ଆସେ ସ ସଟନ ତାଙ୍କ ସହିତ ସାକ୍ଷାତ କରିବା ପରେ ଉଲ୍ଲେଖ କରିଛନ୍ତି । ବକ୍ସି-ବଜାର ସାହୁ ବଂଶରେ ସାଧୁ ସୁନ୍ଦର ଏବେ ବି ହେଉଛନ୍ତି କୁଳଦେବତା

Digitized by PPRACHIN, SOA

ଏବଂ ସେ ଜ୍ୟେଷ୍ଠପୁତ୍ର ଭାବରେ ସମ୍ମାନିତ । ତାଙ୍କ ନାମରେ ସେମାନେ କିଛି ଜମି ଖଞ୍ଜିଛନ୍ତି ଏବଂ କୁଜାବର ମଠର ତତ୍ତ୍ୱାବଧାନ ସେଇମାନେ କରୁଛନ୍ତି ।

## ସୁନ୍ଦର ଦାସଙ୍କ ମାଳିକା

ସୁନ୍ଦର ଦାସ ଅନେକ ଗୁଡ଼ିଏ ମାଳିକା ରଚନା କରିଥିଲେ ବୋଲି କୁହାଯାଉଛି । ତାହାକୁ ଅବିଶ୍ୱାସ କରିହେଉ ନାହିଁ । ତାହାଙ୍କର ଆଦିଶିଷ୍ୟ ରାମଚନ୍ଦ୍ର ଝା ଯାଚକଙ୍କୁ ସେ ଉପଦେଶାବଳୀ ସହିତ ଯେଉଁ ଭବିଷ୍ୟତବାଣୀଗୁଡ଼ିକ ଶୁଣାଇଥିଲେ ତାହା ରାମଚନ୍ଦ୍ର ଯାଚକ ନିଜେ ଲିପିବଦ୍ଧ କରିଛନ୍ତି ଓ ତାହା ଏହି ସଂକଳନରେ ମୁଦ୍ରିତ ହୋଇଛି । ତେଣୁ ପୂର୍ବସୂରିମାନଙ୍କ ଭଳି ଜଣେ ସାଧକ ପୁରୁଷ ତାଙ୍କ ଶିଷ୍ୟମାନଙ୍କ ଉଦ୍ଦେଶ୍ୟରେ ବା ଜଗତବାସୀଙ୍କ ଉଦ୍ଦେଶ୍ୟରେ କିଛି ବାଣୀ ପ୍ରଚାର କରିଥିବା ଅସମ୍ଭବ ନୁହେଁ । ମାତ୍ର ତାହାଙ୍କର ହଜାର ହଜାର ଅନୁଗାମୀ ଥିବା ସତ୍ତ୍ୱେ ଖଣ୍ଡିଏ ହେଲେ ପୋଥିର ନକଲ ନ ମିଳିବା ଅତ୍ୟନ୍ତ ବିସ୍ମୟକର ବିଷୟ । ଶିଷ୍ୟମାନଙ୍କ ତୁଣ୍ଡରେ ସାଧୁଙ୍କର ଆତ୍ମବାଣୀ ବୋଲି କୁହାଯାଉଥିବା ଗୋଟିଏ ପଦ ଶୁଣିବାକୁ ମିଳେ । ସେଇଟି ହେଉଛି—

"ବିଲ୍ୱପତ୍ର ଆଉ ତୁଳସୀ ପତ୍ରକୁ
ପ୍ରାତଃରୁ କରି ସେବନ,
ଗନ୍ଧନଘା ତଳେ ସ୍ନାନସାରି ମୁହିଁ
ଧରେ ସମାଧି ଆସନ ।
ଏଇମତେ ଜାଣ କଟିଗଲା ମୋର
ଯୋଗରେ ପାଞ୍ଚ ବରଷ,
ପରମେଶ୍ୱରଙ୍କ ଆଶୀର୍ବାଦ ହେଲା
ଧ୍ୟାନ ମୋ ହୋଇଲା ଶେଷ ।"

ସେଇଭଳି ସମାଧି ମନ୍ଦିରର ନିମ୍ନ ଦେଶରେ ଥିବା ଲଳିତାକୁଣ୍ଡର ମାହାତ୍ମ୍ୟ ସମ୍ପର୍କରେ ସାଧୁ କୁଆଡ଼େ ଶୁଣାଇଥିଲେ—

Digitized by PPRACHIN, SOA

"ପବିତ୍ର କୁଣ୍ଡ ସଙ୍ଗାବନ
ପଞ୍ଚକେ ଅଙ୍ଗାରକେ ସ୍ନାନ,
କଲେ କଲ୍ମଷ ବ୍ୟାଧି ଶୋକ
ବିନାଶ ହୁଏ ମିଳେ ମୋକ୍ଷ ।"

ଏହା ମଧ୍ୟ ବିଶ୍ୱାସଯୋଗ୍ୟ ନୁହେଁ । ଏହା ଯେ ସାଧୁଙ୍କର ମୁଖ ନିଃସୃତ ବାଣୀ ଏଥିରେ ତାଙ୍କର ଶିଷ୍ୟମାନଙ୍କର ମଧ୍ୟ ସଂଶୟ ଅଛି । ମନେହୁଏ ସାଧୁଙ୍କର କେହି ଶିଷ୍ୟ ପରବର୍ତ୍ତୀ କାଳରେ ନିଜ ରଚନାକୁ ସାଧୁଙ୍କର ବାଣୀ ବୋଲି ପ୍ରଚାର କରିଛନ୍ତି । ବଟକୃଷ୍ଣ ସାମଲ ତାଙ୍କ ରଚିତ 'ମହାତ୍ମା ସାଧୁ ସୁନ୍ଦର' ପୁସ୍ତକରେ ସୁନ୍ଦରି ଗାଦିରୁ ମିଳିଥିବା ପୋଥିର କିୟଦଂଶ ବୋଲି ଉଲ୍ଲେଖ କରି ସାଧୁଙ୍କ ଜୀବନୀ ସମ୍ପର୍କରେ ଯେଉଁ କେତୋଟି ବାକ୍ୟ ଉଦ୍ଧାର କରିଛନ୍ତି, ସେ ବିଷୟରେ ସେ ନିଜେ ମଧ୍ୟ ସଂଶୟମୁକ୍ତ ନୁହନ୍ତି ।

ଜୀବନୀ ଲେଖକ ସ୍ୱର୍ଗତ ପ୍ରମଥନାଥ ବସୁ କହିଛନ୍ତି ଯେ ସାଧୁଙ୍କର 'ମାଳିକା' ସମେତ ବହୁ ରଚନା, ଦାର୍ଶନିକ ଆଲୋଚନା ଓ ମକଦ୍ଦମାର କାଗଜପତ୍ର ଇତ୍ୟାଦି ବକ୍ସି ବଜାରର ଶ୍ୟାମସୁନ୍ଦର ସାହୁ ପ୍ରକାଶନ ଉଦ୍ଦେଶ୍ୟରେ ଫକୀରମୋହନଙ୍କ ହାତରେ ଦେଇ ଦେଇଥିଲେ । ଶ୍ୟାମସୁନ୍ଦର ସାହୁ ଥିଲେ ଫକୀରମୋହନଙ୍କର ପ୍ରାୟ ସମବୟସ୍କ ଏବଂ ସାଧୁଙ୍କର ଶିଷ୍ୟପରିବାରର । ଫକୀରମୋହନ ନିୟମିତ ସାହୁଙ୍କ ଘରକୁ ଯିବା ଆସିବା କରୁଥିଲେ । ଫକୀରମୋହନଙ୍କ ମୃତ୍ୟୁପରେ ସେହି ଅମୂଲ୍ୟ ସମ୍ପଦଗୁଡ଼ିକ ଆଉ ଉଦ୍ଧାର କରିଯାଇ ପାରିଲା ନାହିଁ । ଫଳରେ ସେଗୁଡ଼ିକ ଚିରଦିନ ପାଇଁ ଲୋକଲୋଚନ ଅଗୋଚରରେ ରହିଗଲା । ସାଧୁ ସୁନ୍ଦର ଦାସଙ୍କ ଦ୍ୱାରା ଲିଖିତ ବୋଲି କୁହାଯାଉଥିବା ମଗଠି-ବନ୍ଦୀ ଭାଷାର ଚୌପଦୀ ଗୁଡିକ ପ୍ରକୃତରେ ବନ୍ଦୀକବି ପନ୍ଥ ସୁନ୍ଦର ଦାସଙ୍କ ରଚନା ବୋଲି ପ୍ରମାଣ ସହ ଡକ୍ଟର ନଟବର ସାମନ୍ତରାୟ ଦର୍ଶାଇଛନ୍ତି । ଏହା ଅମୂଳକ ବୋଲି ମନେହୁଏ ନାହିଁ । କାରଣ ମରହଟ୍ଟା ଶାସନ କାଳରେ ନାଗପୁର, ଜବଲପୁର ଅଞ୍ଚଳରୁ ଅନେକ ଶିଷ୍ୟ ଆସି କୁଜଙ୍ଗବରର ବୈଦାନ୍ତିକ ବିଦ୍ୟାଳୟରେ ଅଧ୍ୟୟନ କରୁଥିଲେ । ହୁଏତ ସେଇମାନଙ୍କ

Digitized by PPRACHIN, SOA

ଜରିଆରେ ସନ୍ଥ ସୁନ୍ଦରଙ୍କ ଚୌପଦୀ ଗ୍ରନ୍ଥଟି ସାଧୁଙ୍କ ଆଶ୍ରମରେ ପ୍ରବେଶ କରିଥିଲା ଏବଂ ଶିଷ୍ୟମାନେ ତାକୁ ଆମ୍ବୃସ୍ଥ କରି ନେଇଥିଲେ ।

ସାଧୁ ସୁନ୍ଦରଙ୍କ କିଛି ପୋଥି ବା ମାଳିକା ରାଜାନୁଗ୍ରହ ଆଶାରେ ସ୍ଥାନୀୟ ଲୋକେ ଢେଙ୍କାନାଳ ରାଜାଙ୍କ ହାତରେ ସମର୍ପଣ କରି ଦେଇଥିବା କଥା ଶୁଣିବାକୁ ମିଳେ । କାରଣ ଢେଙ୍କାନାଳ ରାଜାଙ୍କ ସମ୍ପର୍କରେ ସେଥିରେ କିଛି କଥା ଉଲ୍ଲେଖ ଥିଲା । ଏଇ କଥା ଯଦି ସତ୍ୟ ହୋଇଥାଏ, ତେବେ ଢେଙ୍କାନାଳ ରାଜପରିବାରରୁ ପୋଥିଟି ଉଦ୍ଧାର କରାଯାଇପାରିଲେ କିଛି କଥା ଆଲୋକକୁ ଆସିପାରନ୍ତା ।

## କୁଜୀବର ପତ୍ର

ସୁନ୍ଦର ଦାସଙ୍କ ମାଳିକା ଭଳି 'କୁଜୀବର ପତ୍ର'ର ସ୍ୱରୂପ ମଧ୍ୟ ଅଜ୍ଞାତ ଅଟେ । ବ୍ରିଟିଶ ମ୍ୟୁଜିୟମ ବା ଲଣ୍ଡନର 'ଇଣ୍ଡିଆ ଅଫିସ୍ ଲାଇବ୍ରେରୀ'ରେ ଏହାର କିଛି ନକଲ ଥିବାର ଅନୁମାନ କରାଯାଏ । ମିଶନାରୀମାନେ କୁଜୀବର ପତ୍ରର ନକଲମାନ ସଂଗ୍ରହ କରି ତାହାର ଇଂରାଜୀ ଅନୁବାଦ ସହିତ ସେଗୁଡ଼ିକ ବିଲାତର ମିଶନକୁ ପଠାଉଥିଲେ । ଓଡ଼ିଆ ଅଫିସର ଶ୍ରୀଯୁକ୍ତ ମାନସିଂହ ଲଣ୍ଡନରେ ହାଇ କମିଶନର ଥିବାବେଳେ ତାଙ୍କରି ଜରିଆରେ କୁଜୀବର ପତ୍ରର କିଛି ଫଟୋଚିତ୍ର ସଂଗ୍ରହ କରିବା ପାଇଁ ଓଡ଼ିଶାର ଜଣେ ଗବେଷକ ଉଦ୍ୟମ କରିଥିଲେ; ମାତ୍ର ଫଳପ୍ରଦ ଯୋଗାଯୋଗ ଅଭାବରୁ ବା ଉପଯୁକ୍ତ ସହଯୋଗ ନ ମିଳିବାରୁ ସେ ଏଥିରେ କୃତକାର୍ଯ୍ୟ ହୋଇପାରିଲେ ନାହିଁ । ତେବେ କୁଜୀବର ପତ୍ର ପ୍ରକୃତରେ ସମ୍ବାଦଧର୍ମୀ ଥିଲା କି ନାହିଁ, ସାମ୍ବାଦିକତା ଦୃଷ୍ଟିରୁ ତାହାକୁ ଓଡ଼ିଶାର ପ୍ରଥମ ସମ୍ବାଦପତ୍ର (ହାତଲେଖା) କୁହାଯିବା କେତେଦୂର ଯଥାର୍ଥ, ସେ ବିଷୟରେ ଅଧିକ ଅନୁଧ୍ୟାନର ଆବଶ୍ୟକତା ଅଛି ।

## ଏହି ସଂକଳନ

ସାଧୁ ସୁନ୍ଦର ଦାସଙ୍କ ସମ୍ପର୍କରେ ମିଶନାରୀ ରିପୋର୍ଟ ଓ କିଛି ଜନଶ୍ରୁତି ବ୍ୟତୀତ ଅନ୍ୟ କୌଣସି ପ୍ରାମାଣିକ ତଥ୍ୟ ମିଳେ ନାହିଁ । ତେଣୁ ତାଙ୍କର ପୂର୍ଣ୍ଣାଙ୍ଗ ଜୀବନୀ ଓ କୃତିଗୁଡ଼ିକ ସଂକଳିତ ହୋଇପାରି ନାହିଁ । 'ଅମୃତ ବଜାର' ପତ୍ରିକା'ର ପ୍ରତିନିଧି ତଥା କଟକ

Digitized by PPRACHIN, SOA

ମ୍ୟୁନିସିପାଲିଟିର ଜଣେ ପୂର୍ବତନ କାଉନସିଲର ସ୍ୱର୍ଗତ ପ୍ରମଥନାଥ ଗୁପ୍ତ ପ୍ରଥମ କରି ୧୯୪୧ ମସିହାରେ ଇଂରାଜୀରେ ସାଧୁଙ୍କର ଏକ ଜୀବନୀ ପୁସ୍ତିକା ପ୍ରକାଶ କରିଥିଲେ । ଏଇଟି ଓଡ଼ିଶା ବାହାରେ ସାଧୁଙ୍କୁ ପରିଚିତ କରାଇବାରେ ବିଶେଷ ଭାବରେ ସାହାଯ୍ୟ କରିଥିଲା । ଏପରିକି କଲିକତାର କ୍ଷିତୀନ୍ଦ୍ରନାଥ ଠାକୁର ଏହାକୁ ବଙ୍ଗଳାରେ ଅନୁବାଦ କରି ସାଧୁଙ୍କର ମହତ୍ତ୍ୱ ତାଙ୍କ ରାଜ୍ୟରେ ପ୍ରଚାର କରିବାକୁ ଲେଖକଙ୍କର ଅନୁମତି ମାଗିଥିଲେ । ୧୯୬୭ ମସିହାରେ ଲକ୍ଷ୍ମୀନାରାୟଣ ସାହୁଙ୍କ ଦ୍ୱାରା ରଚିତ ଇଂରାଜୀ ପୁସ୍ତକଟି ମଧ୍ୟ ଓଡ଼ିଶା ବାହାରେ ଆଦର ଲାଭ କରିଥିଲା । କଲିକତାର 'ଅମୃତ ବଜାର ପତ୍ରିକା', ମାଡ୍ରାସର 'ହିନ୍ଦୁ' ଓ ନାଗପୁରର 'ହିତବାଦ' ପ୍ରଭୃତି ସମ୍ବାଦପତ୍ରରେ ଏହାର ସମୀକ୍ଷା ପ୍ରକାଶିତ ହୋଇଥିଲା । ଏହି ସଂକଳନରେ ଆମେ ଯଥାସମ୍ଭବ ସେହି ପୁରାତନ ଲେଖାଗୁଡ଼ିକ ସଂଗ୍ରହକରି କେତୋଟି ନୂତନ ପ୍ରବନ୍ଧ ସହିତ ସୀମିତ କଳେବର ମଧ୍ୟରେ ସ୍ଥାନ ଦେଇଛୁ ।

ଏହି ସଂକଳନ ପାଇଁ ଉପାଦାନ ସଂଗ୍ରହ କରିବା ଦିଗରେ ଯେଉଁମାନେ ଆମକୁ ଆଗ୍ରହର ସହିତ ସାହାଯ୍ୟ କରିଛନ୍ତି ସେମାନଙ୍କ ନିକଟରେ ଆମେ କୃତଜ୍ଞ । ସେମାନେ ହେଲେ କଟକର ଆଡ଼ଭୋକେଟ ସୁବାସଚନ୍ଦ୍ର ସାହୁ, ଶ୍ରୀ ବ୍ରଜକିଶୋର ସାହୁ, ଶ୍ରୀ ଜତେନ୍ଦ୍ରନାଥ ଦାସ, ଶ୍ରୀ ବୈରାଗୀଚରଣ ସାହୁ, ଶ୍ରୀ ଅର୍ଜ୍ଜୁନଚରଣ ସାହୁ, କୁଜାବର ନିବାସୀ ଶ୍ରୀ ଦୈତ୍ୟାରି ଦାସ, ଶ୍ରୀ କ୍ଷୀରୋଦଚନ୍ଦ୍ର ବିଶ୍ୱାଳ ଏବଂ ତାଙ୍କ ପୁତ୍ର ମହେନ୍ଦ୍ରକୁମାର ବିଶ୍ୱାଳ । ଏହି କଲେଜର ଗଣିତ ବିଭାଗର ଅଧ୍ୟାପକ ପ୍ରଫୁଲ୍ଲ କୁମାର ସାହୁଙ୍କର ପ୍ରାଥମିକ ସାହାଯ୍ୟ ଓ ଉତ୍ସାହଜନକ ସହଯୋଗ ଏହି କାର୍ଯ୍ୟରେ ଅଗ୍ରସର ହେବାପାଇଁ ଆମକୁ ବହୁତ ସାହାଯ୍ୟ କରିଛି । ସର୍ବଶେଷରେ ଓଡ଼ିଆ ବିଭାଗର ଅଧ୍ୟାପକ ଦୈତ୍ୟାରି ଶୁକ୍ଳ ଶ୍ରମ ଓ ସମୟ ଦେଇ ଆଗ୍ରହର ସହିତ ଯେଉଁଳି ସାହାଯ୍ୟ କରିଛନ୍ତି, ତାହା ହୋଇ ନ ଥିଲେ ସଂକଳନଟି ବୋଧେ ପୂର୍ଣ୍ଣାଙ୍ଗ ହୋଇପାରି ନ ଥାନ୍ତା । ସେ ସମସ୍ତଙ୍କ ପ୍ରତି ଆମେ କୃତଜ୍ଞତା ଜ୍ଞାପନ କରୁଛୁ ।

— ମହେଶ୍ୱର ମହାନ୍ତି

Digitized by PPRACHIN, SOA

# ମହାତ୍ମା ସାଧୁ ସୁନ୍ଦର ଦାସ

( ରଚନା କାଳ ୧୯୪୮ )

ସ୍ୱର୍ଗତ **କୃଷ୍ଣମୋହନ ସାହୁ**

ଭାରତବର୍ଷ ମଧ୍ୟରେ ଓଡ଼ିଶା ବା ଉତ୍କଳ ଧର୍ମପ୍ରଧାନ ଦେଶ ବୋଲି ଆଦମ ଯୁଗରୁ ଖ୍ୟାତି ଲଭି ଆସିଛି । ହିନ୍ଦୁ ଜଗତର ଜଗନ୍ନାଥ ମନ୍ଦିର ସର୍ବଶ୍ରେଷ୍ଠ ଧର୍ମପୀଠ ଅଟେ । ସେଥିପାଇଁ ଆଜି ଉତ୍କଳ କହିଲେ ଜଗନ୍ନାଥ କ୍ଷେତ୍ର ବୋଲି ସମସ୍ତେ ବୁଝନ୍ତି ।

ଏହି ପବିତ୍ର ଭୂମିରେ କେତେ ଋଷି, କବି, ସାଧୁ, ତପସ୍ୱୀ, ସନ୍ନ୍ୟାସୀ ଓ ସମାଜ ସଂସ୍କାରକ ଜନ୍ମ ଗ୍ରହଣ କରିଥିଲେ । ସେଥିମଧ୍ୟରେ ଶ୍ରୀ ଅଚ୍ୟୁତାନନ୍ଦ ଦାସ, ବଳରାମ ଦାସ, ଭକ୍ତଚରଣ ଦାସ, ବିଶ୍ୱନାଥ ଦାସ, କବି ବା ପୁରୁଷୋତ୍ତମ ବିଶ୍ୱନାଥ ଖୁଣ୍ଟିଆ, ଦୀନକୃଷ୍ଣ ଦାସ, ଗୋବିନ୍ଦ ଦାସ, ହଳଧର ଦାସ, ଜଗନ୍ନାଥ ଦାସ, ମାଧବ ଦାସ, ରଘୁନାଥ ଦାସ, ଶାରଳା ଦାସ, ଶ୍ରୀପତି ଦାସ, ତ୍ରିପୁରାରି ଦାସ, ସୁନ୍ଦର ଦାସ ଓ ଉତ୍କଳମଣି ଗୋପବନ୍ଧୁଙ୍କ ନାମ ଉଲ୍ଲେଖଯୋଗ୍ୟ ।

ମୁଁ ଏହି 'ଦାସ' ଭାଇମାନଙ୍କ ପରିଚୟ ଦେବାକୁ ଗଲେ ଏହି କ୍ଷୁଦ୍ର ପୁସ୍ତକଟିରେ ସ୍ଥାନ ହେବ ନାହିଁ । ପ୍ରାୟ ସମସ୍ତେ କିଛି ନା କିଛି ଦାସ ଭାଇମାନଙ୍କ ସମ୍ବନ୍ଧରେ ଜାଣି ଅଛନ୍ତି । ବର୍ତ୍ତମାନ ମୁଁ କେବଳ ସାଧୁ ସୁନ୍ଦର ଦାସ ବା ସୁନ୍ଦର ବାବାଜୀଙ୍କ ସମ୍ବନ୍ଧରେ ସଂକ୍ଷେପରେ କିଛି ଜଣାଉଛି ।

ଏ ମହାତ୍ମା ଜଣେ ସର୍ବଧର୍ମ ସମନ୍ୱୟର ପ୍ରତିଷ୍ଠାତା, ପଥ ପ୍ରଦର୍ଶକ, ଯୋଗୀ, ଋଷି, ସନ୍ନ୍ୟାସୀ ଓ ସମାଜ ସଂସ୍କାରକ ଥିଲେ । ସେ ୧୭୨୦ ସାଲରେ ଜନ୍ମଲଭି କରି ୧୮୩୮ ସାଲ ପର୍ଯ୍ୟନ୍ତ ଦୀର୍ଘ ୧୧୮ ବର୍ଷ କାଳ ବଞ୍ଚି ରହି ଦେଶ, ଜାତି ଓ ଧର୍ମ ପାଇଁ ଆଜୀବନ

Digitized by PPRACHIN, SOA

ସଂଘର୍ଷ କରି ଅମରତ୍ୱ ଲାଭ କରି ଅଛନ୍ତି । ଏହାଙ୍କ କର୍ମ ସହିତ ସାଧୁ ସେଣ୍ଟ ପଲ, ଡାକ୍ତର ଆନିବେଶାନ୍ତ, ରାଜା ରାମମୋହନ, ମହାପୁରୁଷ କେଶବଚନ୍ଦ୍ର ଓ ମହାତ୍ମା ଗାନ୍ଧିଙ୍କ କାର୍ଯ୍ୟ କେତେକ ଅଂଶରେ ତୁଳନୀୟ ।

## ସାଧୁ ସୁନ୍ଦର ଦାସଙ୍କର ବାଲ୍ୟଜୀବନୀ ଓ ଶିକ୍ଷାଦୀକ୍ଷା

ମହାତ୍ମା ସାଧୁ ସୁନ୍ଦର ଦାସ ବା ସୁନ୍ଦର ବାବାଜୀ କଟକ ଜିଲ୍ଲା ଅନ୍ତର୍ଗତ ଆଠଗଡ଼ ଷ୍ଟେଟର କୁଆଁରପୁର ବା କୁମାରପୁର ଗ୍ରାମରେ ୧୭୨୦ ସାଲରେ ସୂର୍ଯ୍ୟବଂଶୀୟ କ୍ଷତ୍ରୀୟ କୁଳରେ ଜନ୍ମଗ୍ରହଣ କରି ଥିଲେ । ବାଲ୍ୟକାଳରୁ ସେ ପିତାମାତାଶୂନ୍ୟ ହୋଇ ତାହାଙ୍କ ବଡ଼ବାପାଙ୍କ ଯତ୍ନରେ ଲାଳିତପାଳିତ ହେଲେ । ତତ୍‌ପରେ ଗ୍ରାମ୍ୟ ପାଠଶାଳା ବା ଚାଟଶାଳୀରେ ପାଠ ପଢ଼ିବା ଆରମ୍ଭ କଲେ । ସେ ଭାରି ଅମାନିଆ ହୋଇ ପାଠଶାଠରେ ମନ ଦେଉ ନଥିଲେ । ସଦାବେଳେ ଗ୍ରାମର ଆଖପାଖ ଜଙ୍ଗଲକୁ ଯାଇ ସାଙ୍ଗ ସାଥିଙ୍କୁ ନେଇ ଶିକାର କରିବାରେ ଅଭ୍ୟସ୍ତ ଥିଲେ ଓ ପ୍ରତିବେଶୀମାନଙ୍କର ହିତ କାର୍ଯ୍ୟରେ ସଦାବେଳେ ଲିପ୍ତ ରହୁଥିଲେ । ତାଙ୍କର ପିଲାଦିନରୁ ଏକୁଟିଆ ବସି ଚିନ୍ତା କରିବା, ସାଙ୍ଗ ସାଥିଙ୍କ ମଧ୍ୟରେ ସର୍ଦ୍ଦାର ହେବା, ଅନ୍ୟାୟ କାର୍ଯ୍ୟରେ ପ୍ରତିବାଦ କରିବା ଓ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବା ପ୍ରଧାନ କାର୍ଯ୍ୟ ଥିଲା । ଦୁଃଖୀ ଦରିଦ୍ରଙ୍କୁ ଦେଖିଲା ମାତ୍ରେ ତାଙ୍କ ହୃଦୟ କାନ୍ଦି ଉଠାଉଥିଲା । ଏଥିପାଇଁ ସମସ୍ତ ଗ୍ରାମବାସୀ ତାହାଙ୍କୁ ଆଦର କରୁଥିଲେ । ବାଲ୍ୟକାଳରୁ ସବୁ ସମାଜରେ ମିଶିବା ଦ୍ୱାରା ଆଜି ମହାତ୍ମା ସାଧୁ ସୁନ୍ଦର ଦାସ ଅମର ହୋଇ ଅଛନ୍ତି । ତାହାଙ୍କର ଅହିଂସା, ସତ୍ୟ, ନ୍ୟାୟ ବିଚାର ଜଗତରେ ଶୀର୍ଷ ସ୍ଥାନ ଅଧିକାର କରିଛି । ଏହା ପ୍ରତ୍ୟେକ ସମାଜର ମୂଳ ମନ୍ତ୍ର । "ଜୀବ ଓ ଜଗତର ସଂଗ୍ରାମ ବଡ଼ ଖିଅଣ୍ଡ; କିନ୍ତୁ ଜୀବ ଜଗତ ବୋଲି ଏକ ଅର୍ଥରେ ବୁଝିଲେ ଅତି ଆନନ୍ଦ ହୁଅନ୍ତା । ସତ ଆପେ ଆପେ ଆସି ଆମକୁ ଦେଖା ଦିଅନ୍ତା, ଶାନ୍ତି ମଧ୍ୟ ବିରାଜନ୍ତା, ସୁଖ ମଧ୍ୟ ହୁଅନ୍ତା । ଭେଦଭାବ ଛାଡ଼ି କର୍ତ୍ତବ୍ୟ ଜ୍ଞାନରେ ସମସ୍ତେ ସମସ୍ତଙ୍କର ଭାଇ ଓ ଭଉଣୀ ଅଟନ୍ତି ।" ଏହି କଥା ସେ ସମସ୍ତ ଗ୍ରାମବାସୀଙ୍କୁ ବୁଝାନ୍ତି ।

Digitized by PPRACHIN, SOA

ଲୋକମାନେ ଏହା ଶୁଣି କହୁଥାନ୍ତି —"ଆଜ୍ଞା ଦେଖ, ଭଗବାନ ଏପରି ଶିଶୁଟିକୁ ମା' ଛେଡ଼ଇଣ୍ଡି ଓ ବାପା ଛେଡ଼ଇଣ୍ଡି କରିଛନ୍ତି । ଆହା, କେଡ଼େ ଦୁଃଖ ! କିନ୍ତୁ ଯେ ଦୁଃଖୀ ବୋଲି ଜଗତର ଦୁଃଖ ବୁଝି ପାରୁଛି ଓ ଭଲ ମନ୍ଦ ବାଛି ଦେଉଛି । ଯେପରି ତୁଳସୀ ଦୁଇ ପତ୍ରରୁ ବାସେ, ଠିକ୍ ସେହିପରି ଗୁଣ ଏହାଠାରେ ଦେଖା ଯାଉଛି ।"

ଶୈଶବରୁ ମାତୃପିତୃହୀନ ହୋଇ ସୁଦ୍ଧା ସମାଜ ସଂସ୍କାର ଗୁଣ ତାଙ୍କଠାରେ ନିହିତ ଥିଲା । ଯେକୌଣସି ପ୍ରକାରେ ଗ୍ରାମ୍ୟ ପାଠଶାଳା ବା ଟୋଲର ଶିକ୍ଷା ସମାପ୍ତ କରି ଦେଶଦେଶାନ୍ତରରେ ସେ ପଶିଲେ ଓ ପରିବାର ସଙ୍ଗେ ଜଗତକୁ ଲକ୍ଷ୍ୟ କଲେ । ପ୍ରଥମେ ଆଠଗଡ଼ ଷ୍ଟେଟ ଦରବାରରେ ସାମାନ୍ୟ ସୈନିକ ସେବାରେ ନିଯୁକ୍ତ ହୋଇ ଆତ୍ମଚେଷ୍ଟା ଓ ବିଚକ୍ଷଣ ବୁଦ୍ଧି ପ୍ରଭାବରେ ସମସ୍ତ ଓଡ଼ିଶା ଗଡ଼ଜାତର ସେନା ନାୟକ ବା ସେନାପତି ହୋଇପଡ଼ିଲେ । ତାହାଙ୍କୁ ଗଡ଼ଜାତ ରଜାମାନଙ୍କ ସପକ୍ଷରେ ଅନ୍ୟାନ୍ୟ ରଜା ମହାରଜାଙ୍କ ସଙ୍ଗେ ହିଂସାର ଯୁଦ୍ଧ ବାରମ୍ବାର କରିବାକୁ ହେଉଥିଲା । ସେ ଯୁଦ୍ଧରେ ରଜା ମହାରଜା-ମାନଙ୍କୁ ନିଜର ଅସୀମ ସାହସ ଓ କୌଶଳ ଦ୍ୱାରା ଆପଣା କରଗତ କରୁଥିଲେ । ଧର୍ମମାତ୍ର, ରାଜମାତ୍ର, ସତ୍ୟମାତ୍ର ଓ ଅହିଂସା ମାତ୍ରକୁ ସର୍ବଶ୍ରେଷ୍ଠ ମାର୍ଗ ବୋଲି ବୁଝାଉଥିଲେ ଓ ପ୍ରଚାର ମଧ୍ୟ କରୁଥିଲେ । ସେ ଆବାଲ୍ୟ ବ୍ରହ୍ମଚାରୀ ଥିଲେ ।

## ସାଧୁ ସୁନ୍ଦରଙ୍କର ଜ୍ୟୋତି ଦର୍ଶନ ଓ ବାଉ ଆଶୀର୍ବାଦ ଲାଭ

ଏକଦା ସାଧୁ ସୁନ୍ଦର ଡାଳଯୋଡ଼ା କଲର ଜଙ୍ଗଲ ମଧ୍ୟକୁ ମୃଗ ଶିକାର କରିବା ନିମନ୍ତେ ଯାଇ ଗୋଟିଏ ମୃଗକୁ ଶର ବିନ୍ଧିଲେ । ମୃଗଟି ଶରବିଦ୍ଧ ହୋଇ ତଳେ ପଡ଼ି ରାମ ନାମ ଉଚ୍ଚାରଣ କଲା । ଏହା ଦେଖି ଓ ଶୁଣି ସେ ଚମକି ପଡ଼ିଲେ । ସଙ୍ଗେ ସଙ୍ଗେ ଗୋଟିଏ ଅପୂର୍ବ ଜ୍ୟୋତିର୍ମୟୀ ରୂପର ଆବିର୍ଭାବ ହେଲା ଓ ଶୂନ୍ୟରୁ ଶବ୍ଦ ହେଲା (ଏହି ଶବ୍ଦ ହେବାର ପରେ ଜଣେ ଧୀର ଗମ୍ଭୀର ସ୍ୱରରେ କହୁଛି) "ତୁମ୍ଭେ କେଉଁଆଡ଼େ ଯାଉଅଛ ? କି କାର୍ଯ୍ୟ କରୁଅଛ ? ତୁମେ ଏ ପଥର ପଥିକ ନୁହଁ । ଧର୍ମ ଓ ସତ୍ୟପଥର ପଥିକ ତୁମେ । ଜୀବ ହିଂସା ବନା

Digitized by PPRACHIN, SOA

କାରଣରେ କରନାହିଁ । ମୋଠାରେ ଭକ୍ତି କର, ମୋର ଆଶୀର୍ବାଦ ଲାଭ କରିବ ।" ଠିକ୍ ଏହିପରି ଘଟଣା ଡାମାସ୍କସ୍ (ବାଗଦାଦ୍ ନିକଟରେ) ନଗରରେ ସନ୍ଧ୍ୟାବେଳେ ସାଧୁ ସେଣ୍ଟ ପଲ୍‌ଙ୍କ ଜୀବନରେ ଘଟିଥିଲା ।

## ତପସ୍ୟା, ଶିକ୍ଷା, ଯୋଗସିଦ୍ଧି ଏବଂ ଗୁରୁ ରୂପର ପ୍ରକାଶ

ଏ ଆଦେଶ ବା ଶୂନ୍ୟବାଣୀ ପାଇବାର କିଛିଦିନ ପରେ ସେ ଧନୁଶର ଓ ଗୁଳିଗୁଳା ଛାଡ଼ି ବୁଦ୍ଧଦେବ ଯେପରି ଗୟା ବୋଧିଦ୍ରୁମ ମୂଳେ ବସି ତପସ୍ୟା କରିଥିଲେ; ଠିକ୍ ସେହିପରି ସୁନ୍ଦର ଦାସ କୁଜାବର ମୂଳରେ ବସି ତପସ୍ୟା ସାଧନ କଲେ । ତପସ୍ୟା କରିବା ସମୟରେ ସେ ଭାଗବତ, ଗୀତା, ସିଦ୍ଧବାକ୍ୟ, ମାଳିକା, ବେଦ, ବେଦାନ୍ତ, ରାମାୟଣ, ମହାଭାରତ, ନ୍ୟାୟ, ତନ୍ତ୍ର, ଦର୍ଶନ, ସାଙ୍ଖ୍ୟ, ଯୋଗ, ପାତଞ୍ଜଳୀ, ମୀମାଂସା ଓ ତର୍କଶାସ୍ତ୍ର ଆଦିର ଆଲୋଚନା ସଙ୍ଗେ ସଙ୍ଗେ ପୂର୍ବବର୍ତ୍ତୀ ସାଧକ ବା ଯୋଗୀଗଣଙ୍କ ପଥ ତନ୍ନ ତନ୍ନ କରି ଦେଖି ତହିଁରେ ପାଣ୍ଡିତ୍ୟ ଲାଭ କରିଥିଲେ ଓ ବୁଝିଥିଲେ । ସବୁ ଧର୍ମର ମୂଳମନ୍ତ୍ର ଏକ ଅଟେ । ଯେ ଯେଉଁବାଟେ ଯାଉନା କାହିଁକି, ସମସ୍ତେ ଭଗବତ୍ ପଦାରବିନ୍ଦରେ ଲୀନ ହେବେ । ଯେପରି ନଦୀ ବିଭିନ୍ନ ସ୍ଥାନରୁ ଆସି ମହାସାଗରରେ ମିଶେ । ସେଥିପାଇଁ ସେ ଭଗବତ୍ ପଦାରବିନ୍ଦରେ ଧ୍ୟାନ ରଖି ଜଗତର ହିତ କାମନାରେ ବ୍ରତୀ ହେଲେ । ଏହି ପ୍ରତିଭା ଦ୍ୱାରା ସେ ଭାରତର ଗଣ୍ୟମାନ୍ୟ ସଜ୍ଜନଙ୍କ ଦୃଷ୍ଟିରେ ପଡ଼ିଲେ ଓ ସେମାନେ ସାଧୁ ସୁନ୍ଦରଙ୍କ ନିକଟକୁ ଆସି ସତ୍‌ଶିକ୍ଷା ଗ୍ରହଣ କଲେ ।

ଏହି ସମୟରେ ମରହଟ୍ଟାମାନେ ଦେଶ ଶାସନ କରୁଥିଲେ । ବହୁ ରାଜା, ମହାରାଜା, ଧନୀ, ନିର୍ଦ୍ଧନ ସମସ୍ତେ ଜାତି ଧର୍ମ ନିର୍ବିଶେଷରେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସୁନ୍ଦର ଦାସ ସେହିଦିନଠାରୁ ଜଗତରେ ଗୁରୁ ବୋଲି ପରିଚିତ ହେଲେ । ରାଜା, ମହାରାଜାଗଣ ସାଧୁଙ୍କୁ ବିପୁଳ ଐଶ୍ୱର୍ଯ୍ୟ ଦାନ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ ମଧ୍ୟ ସେ ତାହା ଗ୍ରହଣ ନ କରି କହିଥିଲେ—"ଏହି ଜ୍ଞାନ ଶୂନ୍ୟ ଜ୍ଞାନ ଅଟେ, ଏହି ଆଶ୍ରମ ଶୂନ୍ୟ ଆଶ୍ରମ ହେବ । କାରଣ ଧନସମ୍ପଦ

ଜଗତରେ କିଛି ନୁହେଁ । କେବଳ ଜ୍ଞାନ ହିଁ ସତ୍ୟ ଧନ ଓ ସର୍ବଶ୍ରେଷ୍ଠ ଅଟେ, ଏହାର ଆଦର କର । ସମ୍ମୁଖରେ ଦେଖ, ପୃଥ୍ୱୀରେ ସାଧୁ ମହନ୍ତମାନେ ଧନ, ଜମି, କୋଠାବାଡ଼ି ଆଦି କରି ରଖିଛନ୍ତି । ସେମାନେ କି ପ୍ରକାର ଅମିତ କାର୍ଯ୍ୟ କରି କଳୁଷିତ ହେଉଅଛନ୍ତି, ସେହିପରି ତୁମମାନଙ୍କଠାରୁ ଧନ ନେଇ ସଞ୍ଚିତ କରି ରଖିଲେ ଭବିଷ୍ୟତରେ ଏହି ସ୍ଥାନ ମହନ୍ତମାନଙ୍କ ମଠ ସଦୃଶ ଲୀଳା ଭୂମିରେ ପରିଣତ ହୋଇ ପବିତ୍ରତା ନଷ୍ଟ କରିବ ଓ ଏ ଯୋଗକ୍ଷେତ୍ର କଳୁଷିତ ହେବ ।”

## କୁଜିବର ଆଶ୍ରମ, ଗ୍ରାମ ଏବଂ ତାର ଚତୁଃପାର୍ଶ୍ୱ

ସଦାବେଳେ ସୁନ୍ଦର ଦାସ ଭଗବତ୍ ପ୍ରେମରେ ମତ୍ତ ରହି ନିଜର ଭାବରାଜିକୁ ଜନଗଣ ମଧ୍ୟରେ ଖେଳାଇ ଆନନ୍ଦ ଲାଭ କରୁଥିଲେ । ସେ ଆଜନ୍ମ ବ୍ରହ୍ମଚାରୀ ଥିଲେ । ଲୋଭ ତାହାଙ୍କୁ ସ୍ପର୍ଶ କରି ନ ଥିଲା । ସେ ଯେଉଁ “କୁଜୀବର” (ଶ୍ରେଷ୍ଠ ବଟବୃକ୍ଷ) ମୂଳରେ ବସି ତପସ୍ୟା ସାଧନ କରିଥିଲେ, ସେହିଠାରେ ତାହାଙ୍କର ଆଶ୍ରମ ଥିଲା । ଆଶ୍ରମଟି ଗୋଟିଏ ସୁରମ୍ୟ ନିର୍ଜନ ସ୍ଥାନରେ ବୃକ୍ଷ ଗହଳ ମଧ୍ୟରେ ଥିଲା । ସେଠାରେ ଗୋଟିଏ ବହୁ ପୁରାତନ ନାତିଉଚ୍ଚ-ବଟବୃକ୍ଷ ତାହାର ଶାଖାପ୍ରଶାଖା ଏପରି ମେଲିଥିଲା, ଯାହାକି ଚନ୍ଦ୍ରାତପ ବା ଚାନ୍ଦୁଆ ଟଣାହେଲା ପରି ଦୂରରୁ ଦେଖାଯାଉଥିଲା । ଏହି ବୃକ୍ଷଟିର ନାମ ‘କୁଜୀବର’ । କାଳକ୍ରମେ ଏହା ନଷ୍ଟ ହୋଇ ତାହାର ସ୍ଥଳରେ ସାଧୁ ସୁନ୍ଦର ଦାସଙ୍କର ଜୀବନ୍ତ ସମାଧି ମନ୍ଦିର ପ୍ରତିଷ୍ଠିତ ହୋଇଅଛି ।

କୁଜୀବର ଗ୍ରାମ :—ଗ୍ରାମଟି କଟକ ନଗର ଉତ୍ତରପାର୍ଶ୍ୱ ମହାନଦୀର ଆରପଟେ, ଚଉଦୁଆର ନିକଟବର୍ତ୍ତୀ । କଟକଠାରୁ ପ୍ରାୟ ୯-୧୦ ମାଇଲ ଦୂର ଓ ତାଳଚେର ରେଳ ରାସ୍ତାର ଶାଳଗାଁ ରେଳ ଷ୍ଟେସନଠାରୁ ଦକ୍ଷିଣ ଦିଗକୁ ପ୍ରାୟ ୧୨ ମାଇଲଠାରେ ଅବସ୍ଥିତ ।

ସେଠାରେ ସାଧୁ ସୁନ୍ଦର ଦାସଙ୍କ ସମାଧି ମନ୍ଦିର, ବାଇଶ ପାହାଚ, ଲଳିତା କୁଣ୍ଡ, ଯଜ୍ଞବେଦୀ, ଦୋଳମଣ୍ଡପ, କୂପ ଓ ଧର୍ମଶାଳା

Digitized by PPRACHIN, SOA

ପ୍ରଭୃତି ଅଛି । ଏହା ଅନେକ ଜନରୁ ଶୁଣାଯାଏ । ଏଠାରେ ସର୍ବଧର୍ମାବଲମ୍ବୀଙ୍କ ଯାତ୍ରାଯାତ୍ରା ଓ ପର୍ବ ଆଦର ସମ୍ମେଳନ ପ୍ରତିବର୍ଷ ହୁଏ । କୁଜାବର ନାମାନୁସାରେ ଗ୍ରାମଟିର ନାମ କୁଜାବରରେ ପରିଣତ ହୋଇଅଛି ଓ ଏହି ବୃକ୍ଷ ମୂଳରେ ସାଧୁ ସୁନ୍ଦର ତପସ୍ୟାରେ ବସି ସିଦ୍ଧିଲାଭ କରିଥିଲେ ।

ଆଜି ଏହି ବୃକ୍ଷଟି କାଳଗର୍ଭରେ ଲୀନ ହୋଇଅଛି ସତ; କିନ୍ତୁ ତାହା ସ୍ଥଳରେ ସାଧୁ ସୁନ୍ଦରଙ୍କ ପଞ୍ଚମୁଖୀ ସମାଧି ମନ୍ଦିର ୧୮୩୮ ସାଲରୁ ପ୍ରସ୍ତୁତ ହୋଇ ତୀର୍ଥ ସ୍ଥାନରେ ପରିଣତ ହୋଇଅଛି ।

କୁଜାବର କହିଲେ ସୁନ୍ଦର ବାବାଜୀଙ୍କ ମଠ ବୁଝାଏ । ସେଠାରେ ଯେ କେତେ ଘଟଣା ଘଟି ଯାଇଅଛି ତାହାର ଇୟତ୍ତା ନାହିଁ । ଏହାର ଚତୁଃପାର୍ଶ୍ୱରେ ଅନେକ ଗୁଡ଼ିଏ ଗ୍ରାମ ଅଛି । ଯଥା— ଚନ୍ଦ୍ରଦୁଆର, ନୂଆଗାଁ, ଯାଯପୈରଙ୍ଗ, ଆଗ୍ରାହାଟ, ବାଣୀପଦା, ବନ୍ଦ୍ରକୋଟ, ପଦାଗାଁ, ବ୍ରହ୍ମପୁର, ଶଙ୍କରପୁର, ତାଳପଦା, ପଧାନଅା, ଭୈରପୁର, ଶାଳଗାଁ, ତେଲିଆପଡ଼ା, ଭଗତପୁର, ଟାଙ୍ଗି, ନଖରା, ଗୃଞ୍ଜୋ ଓ ପଣ୍ଡୁଆ ପ୍ରଭୃତି ଗ୍ରାମମାନ ବିଖ୍ୟାତ । ଏଠାକାର ଜଳବାୟୁ ଭଲ । ପ୍ରାୟ ପ୍ରତ୍ୟେକ ଜାତିର ଲୋକମାନେ ଏଠାରେ ବସବାସ କରନ୍ତି । ଏମାନେ ସାଧାରଣତଃ କୃଷୀ, ମୂଲିଆ, ବଢ଼େଇ, କମାର, ତେଲି, ଗୁଡ଼ିଆ, ବ୍ରାହ୍ମଣ, ନାପିକ ପ୍ରଭୃତି ସବୁ ଶ୍ରେଣୀର ଅଟନ୍ତି । ଏଠାକାର ବ୍ରାହ୍ମଣମାନେ ରାଜା ଜନ୍ମେଜୟଙ୍କର ସର୍ପ ଯଜ୍ଞ ସମୟରୁ କାନ୍ୟକୁବ୍ଜରୁ ଆସିଥିବା ମହାଭାରତର ବିରାଟ ପର୍ବରୁ ଜଣା ପଡ଼ୁଅଛି । ମିଃ ପେରସ ଓ ଷ୍ଟାରଲିଙ୍ଗ ତାହାଙ୍କର ଓଡ଼ିଶା (ଅର୍ଥାତ୍ ପ୍ରାଚୀନ ଉତ୍କଳ) ଇତିହାସରେ ଏହି ବ୍ରାହ୍ମଣଙ୍କ ବିଷୟ ଲିପିବଦ୍ଧ କରି ଅଛନ୍ତି । ଏଥିରୁ ସ୍ପଷ୍ଟ ବୁଝାଯାଏ ଯେ, ଏହାର ଚତୁଃପାର୍ଶ୍ୱରେ ବ୍ରାହ୍ମଣ-ମାନଙ୍କର ଶାସନ ସେହିଦିନ ଠାରୁ ପ୍ରତିଷ୍ଠିତ ହୋଇଅଛି । ଏହି ବ୍ରାହ୍ମଣମାନେ କୁଜାବର ମହାଯଜ୍ଞର ଅଂଶୀଦାର ଅଟନ୍ତି ।

ବର୍ତ୍ତମାନ ସାଧୁଙ୍କ ମଠଟି ରାଜା ଜନ୍ମେଜୟ ଦେବଙ୍କ ଦ୍ୱାରା ଖୋଳା ହୋଇଥିବା ଚନ୍ଦନ ପୋଖରୀର ଉତ୍ତର ପୂର୍ବ କୋଣ ହୁଡ଼ା

ଉପରେ ଅବସ୍ଥିତ । ଏହି ଚନ୍ଦନ ପୋଖରୀଟି କାଳର କବଳରେ ପଡ଼ି ପୋତି ହୋଇ ବର୍ତ୍ତମାନ ଭଗଣ୍ଡି ନାମ ଧାରଣ କରିଅଛି । ବର୍ତ୍ତମାନ ଏଥିରେ ଧାନ୍ୟାଦି ଶସ୍ୟ ଉତ୍ପନ୍ନ ହେଉଅଛି । ମଠର ଦକ୍ଷିଣ-ପଶ୍ଚିମ ଦିଗରେ ବିରାଟ ତୀର୍ଥକ୍ଷେତ୍ର ମଧ୍ୟରେ ଉତ୍ତରେଶ୍ୱର, ବୈଦ୍ୟେଶ୍ୱର, ମାଳକଣ୍ଠେଶ୍ୱର, କେଦାରେଶ୍ୱର, ହରେଶ୍ୱର, କପାଳେଶ୍ୱର, ସୃଷ୍ଟେଶ୍ୱର, ମନର୍ପଶ୍ୱର, ମେଘେଶ୍ୱର ଓ ବୃଦ୍ଧ ଲିଙ୍ଗ ପ୍ରଭୃତି ଏକାଦଶ ଶମ୍ଭୁ ଓ ଯଜ୍ଞେଶ୍ୱରୀ, ସହରେଇ, ଶୁକୁଆ ଖାଇ, କାମୁଡ଼େଇ, ସର୍ବେଶ୍ୱରୀ ଓ ମେଘେଶ୍ୱରୀ ଆଦି ଅଷ୍ଟଶକ୍ତି ଅର୍ଥାତ୍ ଏକାଦଶ ଶମ୍ଭୁ ସଙ୍ଗେ ଅଷ୍ଟନାୟକ ଓ ଅଷ୍ଟନାୟିକା ସହ ଚଉଦୁଆର ଗଡ଼ର (ବିରାଟ କଟକ) ପହରୀ ଘର ଯାହାକୁ ବର୍ତ୍ତମାନ ପାରି ଘର ବୋଲି କହୁଛନ୍ତି (Sentry House) ବୁଢ଼ିକଟ ଓ ପୋଖରୀ ଯାହାକି ପୁରାତନ ବୌଦ୍ଧ ମଠ ଥିଲା, ତାହାକୁ ବର୍ତ୍ତମାନ ବୁଢ଼ି ମଠ ବୋଲି କହୁଛନ୍ତି । ଏହିସବୁ ପୂର୍ବ ସ୍ମୃତି ଶୋଭା ପାଉଅଛି ।

ଆହୁରି ମଧ୍ୟ ସୁନ୍ଦରୀ ମଠର ଉତ୍ତର, ପୂର୍ବ ଓ ଦକ୍ଷିଣ-ପଶ୍ଚିମ ଦିଗରେ କପିଳାସ କନ୍ଦରରୁ ଗନ୍ଧ ନଦୀ ପ୍ରାକୃତିକ ପରିଖା ରୂପେ କଳ କଳ ନାଦରେ ପ୍ରବାହିତ ହୋଇ ବିରୂପା ବା ଚିତ୍ରୋତ୍ପଳା ନଦୀରେ ମିଶିଅଛି । ଯେ ପ୍ରକାର ଫଲଗୁ ନଦୀ ଗୟାର ବୋଧିଦ୍ରୁମ ନିକଟରେ ପ୍ରବାହିତ ହେଉଅଛି । ସେଥିନିମନ୍ତେ ଏହାକୁ ଉତ୍କଳର ଗୟା କ୍ଷେତ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ । ମିସିନେରୀମାନେ ସମସ୍ତ ଉତ୍କଳ ଭ୍ରମଣ କରି ଏହି ସାଧୁଙ୍କ ପୀଠକୁ ଅତି ପବିତ୍ର, ଉଚ୍ଚ ନୈତିକ ଆଦର୍ଶର ଶୀର୍ଷସ୍ଥାନ ଓ ଈଶ୍ୱର ପ୍ରାପ୍ତିର ଚରମ ରମ୍ୟସ୍ଥଳୀ ବୋଲି କହି ଅଛନ୍ତି । ସଟନ ସାହେବ ଏହି ସ୍ଥାନଟିର ମହାତ୍ମ୍ୟ ଦେଖି ଲେଖିଛନ୍ତି—

"It is a true picture of the moral world in heathen lands of Utkal."

## କୁଳୀବର ମହାଯଜ୍ଞ

ଏହି ପବିତ୍ର ପୀଠରେ ସାଧୁ ସୁନ୍ଦର ଦାସ ବୈଶାଖ ମାସ ଅକ୍ଷୟ ତୃତୀୟା ଦିନଠାରୁ ୭ ଦିନ ପର୍ଯ୍ୟନ୍ତ ଯଜ୍ଞ କରୁଥିଲେ ଓ ଧର୍ମ-ବିଷୟକ

Digitized by PPRACHIN, SOA

ଉପଦେଶମାନ ଦେଉଥିଲେ । ଏହି ଯଜ୍ଞକୁ ମିସିନେରୀମାନେ ବହୁବାର ଦେଖି- ଭିନ୍ନ ଭିନ୍ନ ସମୟରେ ସାଧୁଙ୍କ ମଠକୁ ଯାଇ ପ୍ରେମାଳାପ କରି, ସୁନ୍ଦରଙ୍କ ଆଧ୍ୟାତ୍ମିକତାକୁ ଉପଲବ୍ଧି କରି ସେମାନଙ୍କର ବିଲାତ ରିପୋର୍ଟରେ ମଧ୍ୟ ଲେଖି ଅଛନ୍ତି ।

ସାଧୁ ବୈଶାଖ ମାସ ଅକ୍ଷୟ ତୃତୀୟା ଠାରୁ ୭ ଦିନ କାଳ ଅହୋରାତ୍ର ଯଜ୍ଞ କରାଉଥିଲେ ଏବଂ ଦରିଦ୍ରମାନଙ୍କୁ ଲୁଗା, ଛତା ଦାନ କରୁଥିଲେ । ପ୍ରତ୍ୟେକ ଦିନ ୨୦ ସେର କରି ଘୃତ ଆହୁତି ଦିଆ ହେଉଥିଲା । ବ୍ରାହ୍ମଣମାନେ ବେଦ ପାଠ କରୁଥିଲେ । ପ୍ରତିଦିନ ପ୍ରାୟ ୩୦୦୦ ଲୋକ ଭୂରି ଭୋଜନ କରୁଥିଲେ । ଯଜ୍ଞ ସ୍ଥଳରେ ମେଳା, ପ୍ରଦର୍ଶନୀ, କୁମ୍ଭମେଳା ସଦୃଶ ହେଉଥିଲା ଓ ବିବିଧ ବାଦ୍ୟ ବାଜୁଥିଲା । ବାଦ୍ୟମାନ ଏହି ଯଥା—ବଡ଼କାଠ, ତେଲିଙ୍ଗୀ, ଡମ୍ଫା, ନାଗରା, ତାଳ, ମୃଦଙ୍ଗ, କଂସାଳ, ଖଞ୍ଜଣୀ, ଢୋଲ, ଟମକ, ମହୁରୀ, ଶିଙ୍ଗା, ବେଣୁ, ଭେରୀ, ତୁରୀ, ଦାସକାଠିଆ, ରାମତାଳୀ, ବଂଶୀ, ଘୁମୁରା, ମାଦଳ, ପଖଜ, ନହବତ, ଝଗଡ଼ଝମ୍ପା, କାହାଳୀ, ମୁରଲୀ, ଡମ୍ବରୁ, ଧୁଡୁକ, ଝାଞ୍ଜ, ଗିନି, ବୀଣା, ସିତାର, କେନ୍ଦରା, ଏକତାରା, ବେହେଲା, ତୁମ୍ବା, ଡାଗ, ଘଣ୍ଟା, ଘଣ୍ଟି, ଘଣ୍ଟ, ଟଙ୍ଗ ଓ ହରିବୋଲ ହୁଳହୁଳିରେ (୭ ଦିନ ୭ ରାତ୍ର) ସାତ ଦିନ ସାତ ରାତ୍ର ଏହି ସ୍ଥାନଟିକୁ ମୁଖରିତ କରୁଥିଲା । ଏହି ବାଦ୍ୟ ସମୂହର କଥା ମିସିନେରୀମାନେ ତାହାଙ୍କ ରିପୋର୍ଟରେ ଲେଖିବାକୁ ମଧ୍ୟ ଭୁଲି ନାହାନ୍ତି ।

ଲକ୍ଷ ଲକ୍ଷ ନରନାରୀ, ସାଧୁ ଓ ସନ୍ନ୍ୟାସୀଗଣ ଦଳ ଦଳ ହୋଇ ଯଜ୍ଞସ୍ଥଳୀକୁ ଆସୁଥିଲେ । ଓଟ, ହାତୀ, ଘୋଡ଼ା, ବଳଦଗାଡ଼ି, ପାଲିଙ୍କି, ସୁଆରୀ, ଦୋଳା ଓ ତାମଜାନ ପ୍ରଭୃତିରେ ରଜା, ମହାରଜା, ସାଧୁସନ୍ଥ, ଜାତିବର୍ଣ୍ଣ ନିର୍ବିଶେଷରେ କୁଟୀରବାସୀଠାରୁ ଆରମ୍ଭ କରି ସୌଧବାସୀ ପର୍ଯ୍ୟନ୍ତ ନିଜ ନିଜର ଭକ୍ତିପୁଷ୍ପାଞ୍ଜଳି ସହ ନାନାପ୍ରକାର ଯଜ୍ଞ ସାମଗ୍ରୀ ଧରି, ବୋଝରେ ଲଦି ଆସି ରୁଣ୍ଡ ହୁଅନ୍ତି । ସୁନ୍ଦର ଦାସଙ୍କ ନିକଟରେ ସେମାନଙ୍କର ମନର କାମନା ଜଣାଇ ଆଶୀର୍ବାଦ ଭିକ୍ଷାକରନ୍ତି ଓ ତଦନୁସାରେ ଫଳ ମଧ୍ୟ ପାଆନ୍ତି, ଅର୍ଥାତ୍ ସେମାନଙ୍କର

Digitized by PPRACHIN, SOA

ମନକାମନା ପୂର୍ଣ୍ଣ ହୁଏ । ବର୍ତ୍ତମାନ ମଧ୍ୟ ଆମ୍ଭେମାନେ ଦେଖିବାକୁ ପାଉଅଛୁ ଯେ, ଅନେକ ନରନାରୀ ଭକ୍ତିପୂର୍ଣ୍ଣ ହୃଦୟରେ ଯଜ୍ଞରେ ଉପସ୍ଥିତ ହୁଅନ୍ତି ।

ବାବାଜୀ ଏହି ଜନତାକୁ ସମ୍ବୋଧନ କରି କହୁଥିଲେ—"ମୁଁ ଏହି ଯଜ୍ଞ ମୋର ନିଜ ପାଇଁ କରୁନାହିଁ, ଏହା ଜଗତର ମଙ୍ଗଳ ନିମନ୍ତେ କରି ହେଉଅଛି ।"

ବର୍ତ୍ତମାନ ବାବାଜୀଙ୍କ ତିରୋଭାବ ଦିନଠାରୁ ଏହି ଯଜ୍ଞ ସ୍ମୃତି ମୃତାବକ କରି ହେଉଅଛି । ଏହି ଯଜ୍ଞକୁ ସାଧୁ ସୁନ୍ଦର ନିଜେ ପ୍ରତିଷ୍ଠା କରିଥିବାରୁ ଆମ୍ଭେ ତାହାର ସଠିକ୍ ସମୟ ପାଇ ପାରିନାହୁଁ । ଆଜି କାଲି ଅକ୍ଷୟ ତୃତୀୟା ଯଜ୍ଞଟିକୁ "କୁଞ୍ଜବିହାରି ମହାଯଜ୍ଞ" ଓ ବାବାଜୀଙ୍କ ତିରୋଭାବ ଅର୍ଥାତ୍ ଶ୍ରାଦ୍ଧୋତ୍ସବ ଦିନଟିକୁ "ବଡ଼ ଯଜ୍ଞ" ବୋଲି ଲୋକମାନେ କହୁଅଛନ୍ତି ।

ବୈଶାଖ କୃଷ୍ଣ ସପ୍ତମୀ ଦିନଟି (ଚୈତ୍ରପୂର୍ଣ୍ଣିମା ଯିବାର ୭ ଦିନ ପରେ) ସାଧୁଙ୍କର ଶ୍ରାଦ୍ଧୋତ୍ସବ ପାଳନ କରାଯାଏ ଓ ବଡ଼ ଯଜ୍ଞ ହୁଏ । ଏହା ଆଜକୁ ୧୧୦ ବର୍ଷ ହେବ ନିୟମିତ ରୂପେ ପାଳିତ ହେଉଅଛି ।

ଏହି ଦୁଇଗୋଟି ଯଜ୍ଞ ନିର୍ବିଘ୍ନରେ ଆଜି ପର୍ଯ୍ୟନ୍ତ ହୋଇ ଆସୁଅଛି ଓ ଭବିଷ୍ୟତରେ ଏହିପରି ହେଉଥିବ, ଏହାହିଁ ଭଗବାନଙ୍କ-ଠାରେ ପ୍ରାର୍ଥନା ।

ସାଧୁ ସୁନ୍ଦର ଏହିପରି ମାଘ ମାସରେ ଆଉ ଗୋଟିଏ ଯଜ୍ଞ କରୁଥିଲେ ବୋଲି ମିସିନେରୀମାନଙ୍କ ରିପୋର୍ଟରେ ପ୍ରକାଶ; କିନ୍ତୁ ଆଜିକାଲି ତାହା ହେଉନାହିଁ ।

ଯଜ୍ଞର ୭ ଦିନ କାଳ ସାଧୁ ସୁନ୍ଦର ଯଜ୍ଞବେଦୀ ଉପରେ ଠିଆ ହୋଇ ସୂକ୍ଷ୍ମ ଉପଦେଶ ମାନ ବୈଦାନ୍ତିକ ମତରେ ଦେଉଥିଲେ । ଭଗବାନ ହିଁ ଏକମାତ୍ର ଉପାସ୍ୟ । ନାରାୟଣ ହିଁ ସକଳ ଘଟରେ ପରିପୂର୍ଣ୍ଣ । ସାହେବମାନେ ଏହି କଥାକୁ ଇଂରାଜୀରେ ଲେଖିଛନ୍ତି—

Digitized by PPRACHIN, SOA

"The Sadhu advised all not to destroy beasts, animals, fish or birds or any other things that has life, not to cut down trees or shrubs, but to consider all things that have life as ourselves, and as one spirit, for that in all substances, and throughout all forms of materiality, Narayan dwells incarnate."

ଭବଷ୍ୟତର ସତ୍ୟ ଯୂଗକୁ ଲକ୍ଷ୍ୟକରି ସେ କହୁଥିଲେ ଯାହା, ମିସିନେରୀମାନେ ସେଗୁଡ଼ିକୁ ଯେପ୍ରକାର ଲେଖିଛନ୍ତି, ତାହା ଏସ୍ଥଠାରେ ଇଂରାଜୀରେ କଞ୍ଚିତ ଉଦ୍ଧାର କଲୁ—

"My birth into this world is divine, though that is known to no one. I shall become the ruler & Judge of all nations, Hindus, Mussalmans and Pheringees (Europeans), and all other classes of men will regard me, both male & female will reverence me. There shall be no more war, or noise, or disagreement or malice, or adultery, or theft, or lying, or disease, or sorrow, or pain in the world any more. Wild beasts, as tigers and bears, venomous reptiles, as serpents as well as all other vicious or injurious animals shall bear no more malice towards men, and the herds of cattles without a keeper shall return to their homes, without destorying the cornfields of others. The clouds shall give timely rain & earth shall produce its full and proper fruits.

In the hearts of mankind shall the Holy spirit be placed and men & females shall worship the Lord, sing his praises, i e. one loving the other

Digitized by PPRACHIN, SOA

all shall know the Great Brahma.'' ଅର୍ଥାତ୍ ମନୁଷ୍ୟ ପ୍ରକୃତ ସତ୍ୟ ଉପଲବ୍‌ଧି କଲେ ଓ ଭଗବାନଙ୍କ ସାଯୁଜ୍ୟ ଲାଭ କଲେ ଏହି ମରଜଗତ କପଟ ମଧୁମୟ ହୋଇଉଠିବ—ଯାହାକି ଆମ୍ଭମାନଙ୍କ ପୂଜ୍ୟ ଗାନ୍ଧିଜୀ ରାମରାଜ୍ୟର ପରିକଳ୍ପନା କରିଛନ୍ତି, ସେହିସବୁ ଉପଦେଶ ସୁନ୍ଦର ବାବାଜୀ ପଙ୍କ୍ତିବଦ୍ଧରୁ ଲୋକମାନଙ୍କୁ ସରଳ ଭାଷାରେ ଦେଉଥିଲେ ।

## ପାଦ୍ରୀମାନଙ୍କର ସାଧୁଙ୍କ ସମ୍ବନ୍ଧୀୟ ବକ୍ତବ୍ୟ

ଏହି ମହାତ୍ମାଙ୍କ ଶ୍ରାଦ୍ଧରେ ସମସ୍ତଙ୍କର ଭକ୍ତି କରିବା ଦରକାର, କାରଣ ଯାହାଙ୍କ ସମ୍ବନ୍ଧରେ ଖ୍ରୀଷ୍ଟଧର୍ମର ପାଦ୍ରୀମାନେ ବାଧ୍ୟ ହୋଇ ଲେଖି ଯାଇଛନ୍ତି, ତାହାକୁ ଦେଖିଲେ ଜଣାଯାଏ ଯେ, ଏହି ସାଧୁ କେବଳ ଯେ ଧର୍ମ ପ୍ରଚାର କରୁଥିଲେ ତାହା ନୁହେଁ, ତାହାଙ୍କର ଅସାଧାରଣ କ୍ଷମତା ପ୍ରଭାବରେ ସେ ମହାତ୍ମା ବୋଲାଉଥିଲେ । ଲଣ୍ଡନ ବାପ୍‌ଟିଷ୍ଟ ମିସିନେରୀ ସମାଜର ସମ୍ପାଦକ ମି. ଜନ୍ ବ୍ରାଉନ ମାର୍ସ୍ୟାଲମ୍ ୧୭୯୨ ରୁ ୧୮୯୨ ମଧ୍ୟରେ ଘଟିଥିବା ଘଟଣାବଳୀ ତାହାଙ୍କ ଶତାବ୍ଦୀ ପୁସ୍ତକରେ ସାଧୁଙ୍କର ସାକାର ରୂପର ଆବିର୍ଭାବ, ଜୀବନ୍ତ ଭଗବାନ, ଧର୍ମପିତା ଓ ଗୁରୁ ବୋଲି ପରିଚୟ ଦେଇଅଛନ୍ତି । ଆହୁରି ମଧ୍ୟ ଲେଖିଅଛନ୍ତି ଯେ ସୁନ୍ଦର ଦାସଙ୍କ ଆଶ୍ରମରେ ବୈଦାନ୍ତିକ ବିଦ୍ୟାଳୟ ଥିଲା । ତହିଁରେ ପାଞ୍ଚଶତ ଶିଷ୍ୟ ବେଦ, ପୁରାଣ, ନାନାଦି ସଂହିତା ଓ ଶାସ୍ତ୍ରାଦି ଅଧ୍ୟୟନ କରୁଥିଲେ । ଏହି ଶିଷ୍ୟମାନଙ୍କ ମଧ୍ୟରୁ ପ୍ରାୟ ତିନଶତ ବ୍ରାହ୍ମଣ ଓ ଦୁଇଶତ ଅନ୍ୟାନ୍ୟ ଜାତିର ଥିଲେ । ସେମାନେ ଏହାସବୁ ଶିକ୍ଷା କରି ସେମାନଙ୍କର ଦୈନନ୍ଦିନ କାର୍ଯ୍ୟରେ ବ୍ୟବହାର କରୁଥିଲେ ଓ ଲୋକମାନଙ୍କୁ ବ୍ୟବହାର କରିବା ନିମନ୍ତେ ପ୍ରବର୍ତ୍ତାଉଥିଲେ । ରେଭରେଣ୍ଡ ଏ. ଏଚ୍. ଇୟୁଙ୍ଗ, ଏମ୍. ଏ. କହିଛନ୍ତି—''ସାଧୁ ସୁନ୍ଦର ତପସ୍ୟା ବଳରେ ବୁଦ୍ଧଙ୍କ ପରି ଯୋଗୀ, ଋଷି, ସନ୍ନ୍ୟାସୀ ଓ ଗୁରୁ ହୋଇ ପାରିଥିଲେ । ଏହାଙ୍କ ଦ୍ୱାରା ଅନେକ ଅଲୌକିକ ଘଟଣା (Miracles) ହେଉଥିଲା ।'' ପାଠକମାନଙ୍କ କୌତୁହଳ ନିବାରଣ କରିବା ପାଇଁ ଉପରୋକ୍ତ ଦୁଇଜଣଙ୍କର ଉକ୍ତି ଇଂରାଜୀରେ କିଞ୍ଚିତ ଉଦ୍ଧାର କଲୁ—

Digitized by PPRACHIN, SOA

Mr. John Brown Myers, Editor of the Centenary Volume of the Baptist Missionary Society, London (1792 to 1892) Vide Page No. 237 to 252 says "The Orissa Mission is the creation of the spirit of God. Its story is a brief fragment of the literature of the spirit. The bush of Orissa Mission History is aflame with the living God and the same God was training through a Guru or spiritual Guide named Sundara Das (Sundara Babajee or Dharmpita) to a number of young men for the acceptance of yoke of Christ. That Guru dwelt a few miles north of Cuttack named Kujibar. Martial in temper, he had started life as a soldier (millitia) and battled for the chiefs of the hills (Rulers) as a commander, but he was meditative in mood. He became a Hindu Reformer and by his strong personal force and spiritual magnetism attracted as many as five hundred disciples.

Rev. A. H. Young M. A. says that "Sadhu Sundar had also performed miracles."

## ସାଧୁଙ୍କର ଅବତାରବାଦ

ପ୍ରାଚୀନ ଲୋକ ଓ ସାଧୁଙ୍କର ଶିଷ୍ୟମାନଙ୍କଠାରୁ ଶୁଣିବାକୁ ମିଳେ ଯେ ସେ ସ୍ୱୟଂ ଭଗବାନଙ୍କ ଅଂଶ କିମ୍ବା ଅବତାର ବା ପ୍ରେରିତ ମହାପୁରୁଷ ରୂପେ ଆମ୍ଭର ପବିତ୍ର ଉତ୍କଳ ଦେଶରେ ଅବତୀର୍ଣ୍ଣ ହୋଇଥିଲେ ଓ ଆମ୍ଭେମାନେ ମଧ୍ୟ ପିଲାଦିନରୁ ଦେଖୁଅଛୁ, ପ୍ରତିବର୍ଷ ଯଜ୍ଞରେ ଅସଂଖ୍ୟ ନରନାରୀ ନାନାପ୍ରକାର ଭକ୍ତିପୁଷ୍ପାଞ୍ଜଳି ଅର୍ଘ୍ୟ ଓ ସୁବର୍ଣ୍ଣାଦି ପ୍ରଦାନ କରନ୍ତି ଓ ଅନେକ ଲୋକ ସମାଧିଠାରେ ମନକାମନା ପୂରଣ ନିମନ୍ତେ ଆଶୀର୍ବାଦ ଭିକ୍ଷା ମଧ୍ୟ କରନ୍ତି । ଅନେକେ ଦୁଃଖରେ ପଡ଼ି କି ପ୍ରକାର ଶାନ୍ତିରେ ବାସ କରିବେ ଓ ଦୁଃଖରୁ ସାଧୁଙ୍କ

Digitized by PPRACHIN, SOA

କୃପାରୁ ଭୁଲିଯିବେ, ଏଥି ନିମନ୍ତେ ମଧ୍ୟ ଶରଣାପନ୍ନ ହୁଅନ୍ତି । ବଡ଼ ବଡ଼ ମାଲିମୋକଦ୍ଦମା ମୀମାଂସା ନିମନ୍ତେ ଏହି ଗାଦିରେ ସୁନ୍ଦର ଦାସଙ୍କୁ ପ୍ରଧାନ ସାକ୍ଷ୍ୟରୂପେ ରଖି ପଞ୍ଚାୟତ ଫଇସଲ ଆମ୍ଭେମାନେ ସ୍ୱଚକ୍ଷୁରେ ଦେଖିଅଛୁ । ଆଜି ପର୍ଯ୍ୟନ୍ତ ମଧ୍ୟ ହେଉଅଛି । ଗାଦିକୁ ଲୋକମାନେ ଏ ପର୍ଯ୍ୟନ୍ତ ଭୟ ଓ ଭକ୍ତି କରୁଅଛନ୍ତି । ଏହି ସମସ୍ତ ବିଷୟରୁ ଆମ୍ଭେମାନେ ଅନୁମାନ କରୁ ଯେ ସେ ଜଣେ ମହାପୁରୁଷ ଥିଲେ । ତାହାଙ୍କର ଜୀବନ ଲୌକିକ ଜୀବନର ବହୁ ଉଚ୍ଚରେ ଥିଲା । ଏହା ବଡ଼ ସୁଖର କଥା ଯେ ହିନ୍ଦୁ ନରନାରୀ ଏ ପର୍ଯ୍ୟନ୍ତ ସାଧୁଙ୍କୁ ଅବତାର ବୋଲି ପୂଜା କରୁଅଛନ୍ତି ଓ ଖ୍ରୀଷ୍ଟାନଗଣ ମଧ୍ୟ ସାଧୁଙ୍କୁ ଗୁରୁ ବୋଲି ସ୍ୱୀକାର କରୁଛନ୍ତି ଏବଂ ସାଧୁଙ୍କର ମହାତ୍ମ୍ୟକୁ ଅଦ୍ୟାବଧି ଭକ୍ତି ଓ ଶ୍ରଦ୍ଧା କରୁଅଛନ୍ତି ।

ସାଧୁଙ୍କର ଶିଷ୍ୟ ମଧ୍ୟରୁ କେତେକ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବା ଶିଷ୍ୟ, ସାଧୁଙ୍କର ଅଲୌକିକ ଜୀବନ ଦେଖି ପାଦ୍ରୀମାନଙ୍କୁ କହିଥିଲେ— "ସାଧୁ ସୁନ୍ଦର ସ୍ୱୟଂ ଯୀଶୁଖ୍ରୀଷ୍ଟ ଅଟନ୍ତି ।" ୧୮୩୪ ସାଲର ଜେନେରାଲ ବାପ୍‌ଟିଷ୍ଟ ମିଶନ ରିପୋର୍ଟରେ ଦେଖିବାକୁ ମିଳେ—

"Sundar Das assuming the Character of Christ."

ଆମ୍ଭେମାନେ ଦେଖିବାକୁ ପାଉ ଯେ ସୁନ୍ଦର ବାବାଜୀଙ୍କ ଅବତାର-ବାଦ ଅର୍ଥାତ୍ ଅଦ୍ୱୈତ ଓ ଦ୍ୱୈତ ଭାବ ବିଷୟ, ଯେଉଁ ସାଧୁଙ୍କର ଓ ମିସିନେରୀମାନଙ୍କ ମଧ୍ୟରେ ବହୁ ଲୁଚାଚୋରର ପତ୍ର ଆଦାନ ପ୍ରଦାନ ହୋଇଥିଲା ।

ସାଧୁ କହିଥିଲେ, ଯେ ଖ୍ରୀଷ୍ଟଙ୍କ ଶିଷ୍ୟ ହେବ, ସେ ତାଙ୍କର ଆଲୋକ ପାଇବ ଓ ସେ ନିଜେ ଖ୍ରୀଷ୍ଟତ୍ୱ ପ୍ରାପ୍ତ ହେବ । ଅର୍ଥାତ୍ ଖ୍ରୀଷ୍ଟଙ୍କ ସହ ମିଶି ଅଲୌକିକ କାର୍ଯ୍ୟ କରିବ । ଶିଶୁପରି ନହେଲେ ଯୀଶୁଙ୍କୁ ପାଇପାରିବ ନାହିଁ । ଯୀଶୁ ଓ ଶିଶୁ ଏହି ଦୁଇଟିର ଦାର୍ଶନିକ ତତ୍ତ୍ୱ ଯେଉଁ ମିସିନେରୀମାନଙ୍କ ସଙ୍ଗେ ସାଧୁଙ୍କର ବହୁ ଆଲୋଚନା ଲୁଚାଚୋର ପତ୍ରରେ ଆମ୍ଭେମାନେ ଦେଖିବାକୁ ପାଉଅଛୁ । ଲେସି ସାହେବ ଓ ସଟନ ସାହେବଙ୍କ ରିପୋର୍ଟରୁ ଜଣାପଡୁଛି ଯେ ସାଧୁ ସ୍ୱୟଂ ଖ୍ରୀଷ୍ଟଙ୍କ

Digitized by PPRACHIN, SOA

ଅବତାର, କାରଣ ଯେଉଁ ଆତ୍ମା ଯୁଡ଼ିଆରେ ଜନ୍ମଲାଭ କରିଥିଲା ସେହି ଆତ୍ମା ସାଧୁ ସୁନ୍ଦର ରୂପରେ ଭାରତରେ ଆବିର୍ଭାବ ହୋଇଅଛି । ଖ୍ରୀଷ୍ଟଙ୍କର ଅଲୌକିକ କାର୍ଯ୍ୟର ସାମଞ୍ଜସ୍ୟ ସୁନ୍ଦର ଦାସଙ୍କଠାରେ ଦେଖାଯାଉଥିଲା ।

ଲେସି ସାହେବଙ୍କ ଟିପଣିରୁ ଜଣାପଡ଼ୁଛି ସାଧୁ ସୁନ୍ଦର ଯୀଶୁଙ୍କ ପରି ବାରଗୋଟି ଅନ୍ତରଙ୍ଗ ଶିଷ୍ୟ ମଧ୍ୟ କରିଥିଲେ । ସେଥି ନିମନ୍ତେ ସାଧୁ ସୁନ୍ଦର ଅହଂଭାବ ତ୍ୟାଗ କରି ଦାର୍ଶନିକ ମତରେ କହୁଥିଲେ କି ଯୀଶୁଖ୍ରୀଷ୍ଟ ଯୁଡ଼ିଆରେ ଜନ୍ମଲାଭ କରିଥିଲେ, ମୁଁ ଓଡ଼ିଶାରେ ଜନ୍ମ ହୋଇଅଛି । ତାହାଙ୍କର ଓ ମୋର ଆତ୍ମାମିଳନ ଅଛି । ମୁଁ ତାହାଙ୍କୁ ମୋ ଅନ୍ତର ଭିତରେ ଦେଖି ପାରୁଅଛି । ରାମକୃଷ୍ଣ ପରମହଂସ ଯୀଶୁଙ୍କୁ ଦାର୍ଶନିକ ଢଙ୍ଗରେ ଦର୍ଶନ କରି ତାହାଙ୍କର ନାକ ଚେପ୍‌ଟା ବୋଲି କହୁଥିଲେ, ଏହା ହିବ୍ରୁ ଭାଷାର ମୌଳିକ ବାଇବେଲରେ ସଠିକ୍ ବୋଲି ପ୍ରମାଣିତ ହୋଇଅଛି । ତଦ୍ରୂପ ସାଧୁ ସୁନ୍ଦର ଯୀଶୁଙ୍କୁ ଅନୁକରଣ କରୁଥିଲେ ଓ କହୁଥିଲେ ଯେ ଯୀଶୁଙ୍କ ବିଶେଷତ୍ୱ ଯେ ସେ ପର ପାଇଁ ମରିପାରିଥିଲେ ଓ କ୍ରୁଶରେ ଲୋକେ ତାହାଙ୍କ ଦେହରେ କଣ୍ଟା ବିଦ୍ଧ କରୁଥିବା ସମୟରେ ସେ ସେମାନଙ୍କର ମୁକ୍ତି କାମନା କରିଥିଲେ ; କିନ୍ତୁ ମୁଁ ସବୁ ଧର୍ମକୁ ସମାନ ଚକ୍ଷୁରେ ଦେଖୁଅଛି ଓ ସମସ୍ତଙ୍କ ପ୍ରାଣରେ ପୂର୍ଣ୍ଣମାତ୍ରାରେ ବିରାଜୁଛି ଓ ଜଗତର କଲ୍ୟାଣ ସାଧନାରେ ବ୍ରତୀ ହୋଇ ଜଗତପିତାଙ୍କ ସଙ୍ଗେ ଅନବଚ୍ଛିନ୍ନ ଯୋଗରେ ଅଛି । କାରଣ ଯୀଶୁଖ୍ରୀଷ୍ଟଙ୍କ ଜୀବନୀ ଭାରତକୁ ଓଡ଼ିଶାକୁ ମିସିନେରୀମାନେ ନ ଆସିବା ପୂର୍ବରୁ ସେ ଯେ ଲୋକମାନଙ୍କ ମଧ୍ୟରେ ପ୍ରଚାର କରି ଗୁରୁ ରୂପେ ପୂଜା ପାଉଥିଲେ, ଏହା କମ୍ ପ୍ରଶଂସାର କଥା ନୁହେଁ ।

ହିନ୍ଦୁମାନଙ୍କ ମତରେ 'ଗୁରୁ' ଶବ୍ଦର ଅର୍ଥ ଜୀବନ୍ତ ଭଗବାନ । ସାଧୁ ସୁନ୍ଦର ଜୀବନରେ ପ୍ରତିମା ପୂଜା କରୁ ନ ଥିଲେ କି ପ୍ରତିମା ପୂଜକଙ୍କୁ ଘୃଣା କରୁ ନ ଥିଲେ । ସେ କହୁଥିଲେ ଜୀବଜଗତରେ ସ୍ଥାବର ଜଙ୍ଗମ ପ୍ରତ୍ୟେକ ପ୍ରତ୍ୟେକଙ୍କୁ ସାହାଯ୍ୟ କରୁଅଛି । ପରସ୍ପର ପରସ୍ପର ମଧ୍ୟରେ ସମ୍ବନ୍ଧ ଓ ଯୋଗ ସ୍ଥାନବିଶେଷରେ ଘଟୁଛି । ଯଥା—ଆମ୍ରଗଛ

Digitized by PPRACHIN, SOA

ଫଳ ଫଳ ତାହାର ସ୍ୱାଦୁ ସମସ୍ତଙ୍କୁ ଦେଉଅଛୁ । ବିଚ୍ଛୁଆତି ଦେହରେ ଲଗି କୁଣ୍ଡାଇ ହୁଏ ସତ, କିନ୍ତୁ କେତେକ ରୋଗର ମହୌଷଧ । ଏହିପରି ସମସ୍ତଙ୍କର ଭଲ, ମନ୍ଦ, ନ୍ୟାୟ୍ୟ, ଅନ୍ୟାୟ୍ୟ, ଅନ୍ଧାର, ଆଲୁଅ, ସତ, ମିଛ, ଗୁରୁ, ଲଘୁ ଆଦି ଗୁଣ ଅଛୁ । ଏଗୁଡ଼ିକ ବିଶ୍ଳେଷଣ କରି ଏହାର ନିର୍ଗୁଣ ତତ୍ତ୍ୱ ପାଇବା ହିଁ ମନୁଷ୍ୟ ଜୀବନର ଚରମ ଶାନ୍ତି । ଏକ ଆତ୍ମା, ଭେଦ ନାହିଁ । ଅଭେଦ, ଅଲୌକିକ, ଅକ୍ଷୟ, ଅବ୍ୟୟ ଓ ଅରୂପ ଜ୍ୟୋତି ଜଗତରେ ପରିଦୃଷ୍ଟ ହେଉଅଛୁ । ଏହା ନିତ୍ୟ ଓ ସତ୍ୟ ଅଟେ ।

ଏହାକୁ ଯେପରି ସମସ୍ତେ ଅଭ୍ରାନ୍ତ ମତ ବୋଲି ସ୍ୱୀକାର କରୁଅଛନ୍ତି, ସେହିପରି ଯୀଶୁଙ୍କ ମଧ୍ୟରେ ଓ ମୋ ମଧ୍ୟରେ କୌଣସି ପ୍ରଭେଦ ଜ୍ଞାନଚକ୍ଷୁରେ ଅଛୁ ବୋଲି ଅବିଶ୍ୱାସ କରିବାର କାରଣ ନାହିଁ । ଏହା ପୂର୍ଣ୍ଣ ସତ୍ୟ; କାରଣ ଉପନିଷଦରେ ଋଷିମାନେ କହିଛନ୍ତି ତତ୍ତ୍ୱଂମସି ନେତି, ନେତି । ସାଧୁଙ୍କ ଅବତାରବାଦ ସମ୍ବନ୍ଧରେ ଯେ ନାନା ଆଲୋଚନା ଓ କଳ୍ପନା ଜଳ୍ପନା ହୋଇଥିଲା, ସେ ସମ୍ପର୍କରେ ମିସିନେରିମାନେ ଯାହା ଲେଖିଥିଲେ ତହିଁରୁ କିଞ୍ଚିତ ଆଭାସ ଏଠାରେ ଦେଲୁ ।

"Sunder Das gave himself out to be Jesus Christ and that as he was once incarnate in Judia, so he was now became so in Orissa. He in accordance with this character chose tweleve of his principal disciples to represent the twelve apostles.

ସାଧୁଙ୍କର ହାତଲେଖା ପୋଥି ପ୍ରାୟ ସବୁ ନଷ୍ଟଭ୍ରଷ୍ଟ ହୋଇ ଯାଇଅଛୁ । ତାହାଙ୍କର ତିରୋଭାବ ପରେ ଶିଷ୍ୟମାନେ ଏଣେତେଣେ ଛିନ୍ନଛନ୍ନ ହୋଇଯିବାରୁ ପୋଥିସବୁ ଇତସ୍ତତଃ ହୋଇଅଛୁ । ବର୍ତ୍ତମାନ ମଧ୍ୟ ଆଖପାଖ ଗ୍ରାମର ଭଗବତ ଟୁଙ୍ଗିମାନଙ୍କ ମଧ୍ୟରେ କିଛୁ ଦେଖିବାକୁ ମିଳେ, ସେସବୁ ଆଲୋଚନା ହେଲେ ଅଶେଷ ତଥ୍ୟ ଜଣାପଡ଼ନ୍ତା,

Digitized by PPRACHIN, SOA

ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଆମ୍ଭେମାନେ ପରବର୍ତ୍ତୀ ସଂସ୍କରଣରେ ପୋଥିପତ୍ର ହସ୍ତଗତ କରିବାର ଚେଷ୍ଟା କରୁଛୁ, ପାଇଲେ ପ୍ରକାଶ କରିବୁ । ସାଧୁ ସୁନ୍ଦରଙ୍କ ଅବତାରବାଦ ସମ୍ବନ୍ଧେ ବହୁ ଗବେଷଣା କରା ହୋଇଅଛି । ତାହା ଇଂରାଜୀରେ ପ୍ରକାଶିତ ହେବ । ତାହାର ନାମ ହେଉଛି—

Sundar Das in the role of Christ incarnate of Judia.

## ମିସିନେରୀମାନଙ୍କ ପ୍ରଥମ ଓଡ଼ିଶା ଆଗମନ ଓ ସାଧୁଙ୍କ ସମ୍ବନ୍ଧେ ମନ୍ତବ୍ୟ

୧୮୦୩ ସାଲରେ ଇଂରେଜମାନେ ଓଡ଼ିଶା ଜୟ କରିବା ପରେ, ମିସିନେରୀମାନେ ୧୮୨୨ ସାଲରେ ବଙ୍ଗୋପସାଗର ମଧ୍ୟଦେଇ ପଞ୍ଚାମୁଣ୍ଡାଇ ବାଟେ କଟକ ସହରକୁ ଶ୍ରୀରାମପୁରଠାରୁ ଆସିଥିଲେ । ସେମାନେ କଟକରେ କିଛିଦିନ ରହିବା ଉତ୍ତାରୁ, ସାଧୁ ସୁନ୍ଦର ଦାସଙ୍କ ବିଷୟ ଶୁଣିଲେ ଓ ୪ର୍ଥ ବର୍ଷ ପରେ ଅର୍ଥାତ୍ ୧୮୨୬ ସାଲ ଅକ୍ଟୋବର ୧୦ ତାରିଖ ଦିନ ସାଧୁଙ୍କୁ ପ୍ରଥମେ ଭେଟିଲେ । ଏହି ଦିନଟି ଉତ୍କଳର ସର୍ବପ୍ରଧାନ ଐତିହାସିକ ଦିନ ବୋଲି ଗଣିବାକୁ ହେବ, କାରଣ ଉକ୍ତ ଦିନ ସାଧୁଙ୍କ କୁଞ୍ଜବର ଆଶ୍ରମରେ ସର୍ବଧର୍ମ ସମନ୍ୱୟର ଗୋଟିଏ ବିରାଟ ବୈଠକ ହୋଇଥିଲା । ବିଭିନ୍ନ ଅଞ୍ଚଳରୁ ପ୍ରାୟ ୫୦୦୦ (ପାଞ୍ଚହଜାର) ଲୋକ ତହିଁରେ ଯୋଗ ଦେଇଥିଲେ । ସୁନ୍ଦର ଦାସ ଗୀତା, ରାମାୟଣ, ମହାଭାରତ ଓ ନୂତନ ନିୟମ ସଂଯୁକ୍ତ ବାଇବେଲ ମଧ୍ୟରୁ ଅନେକ ଉଦାହରଣ ଦେଇ, ଲୋକମାନଙ୍କୁ ସମାଜ ନୀତି, ରାଜନୀତି ଓ ଧର୍ମନୀତି ଆଦି ବୁଝାଇଥିଲେ । ସେ ବୁଝାଇବା ସମୟରେ ଏପରି ଭାବପ୍ରବଣ ହେଉଥିଲେ ଯଦ୍ଦ୍ୱାରା ତାହାଙ୍କ ଆଖିରୁ ଲୁହ ଝରି ଝରି ହୋଇ ବହିପଡୁଥିଲା ଓ ବେଳେବେଳେ ଠୋ ଠୋ କରି ହସି ଉଠୁଥିଲେ, ଗୁରୁଗମ୍ଭୀର ଭାବ ମଧ୍ୟ ପ୍ରକାଶ ପାଉଥିଲା । ମିସିନେରୀ-ମାନେ ତାଙ୍କର ଏହି ପ୍ରକାର ଅଲୌକିକ ପାଣ୍ଡିତ୍ୟ ଓ ଶକ୍ତି ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇପଡ଼ିଥିଲେ ।

Digitized by PPRACHIN, SOA

ସାଧୁ ସୁନ୍ଦରଙ୍କ ଉପଦେଶର ମୂଳମନ୍ତ୍ର ଥିଲା ଯେ, ସବୁ ଧର୍ମ ସମାନ । ଈଶ୍ୱର ଏକମାତ୍ର ଜଗତର ପିତା । ଆମ୍ଭେମାନେ ତାହାଙ୍କର ପୁତ୍ର । ସେ ଜଗତରେ ସବୁଠାରେ ବିରାଜିତ । ଏହି ଘଟଣାଗୁଡ଼ିକ ମିସିନେରୀମାନେ ଅତି ଆନନ୍ଦ ସହକାରେ ତାହାଙ୍କ ରିପୋର୍ଟ କରିଆରେ ଲଣ୍ଡନକୁ ପଠାଇଥିଲେ ।

ସଟନ ସାହେବଙ୍କ ମନ୍ତବ୍ୟ :—୧୮୬୭ ସାଲ ଅକ୍ଟୋବର ୧୦ ତାରିଖ ଦିନ ସଟନ ସାହେବ ଲେଖିଛନ୍ତି ଯେ, ଭାରତର ଗତ ତିନି ଦିବସ ଓଡ଼ିଶା ମିସିନେରୀମାନଙ୍କ ନିମନ୍ତେ ସବୁଠାରୁ ଆନନ୍ଦ ଦାୟକ, ଉତ୍ସାହପ୍ରଦ ଓ ସ୍ମରଣୀୟ ଦିବସ ଅଟେ । କୁଞ୍ଜବର ମଠରୁ ସୁନ୍ଦର ଦାସ ବା ସୁନ୍ଦର ବାବାଜୀଙ୍କର ୧୧ ଜଣ ଶିଷ୍ୟଙ୍କଠାରୁ ନିମନ୍ତ୍ରଣ ପାଇଲୁ । ସେହି ଶିଷ୍ୟମାନଙ୍କ ମଧ୍ୟରୁ ୧୦ ଜଣ ମଠକୁ ଫେରିଗଲେ ଓ ଆମ୍ଭମାନଙ୍କୁ ରାସ୍ତା ଦେଖାଇ ସଙ୍ଗରେ ଘେନିଯିବାକୁ ଏକଜଣ ଶିଷ୍ୟ ରହିଲେ । ତହିଁ ଆରଦିନ ସକାଳୁ ଆମ୍ଭେମାନେ ଓ ସୁନ୍ଦର ବାବାଜୀଙ୍କ ଶିଷ୍ୟଟି କଟକ ସହରର ମହାନଦୀ ଆରପଟକୁ ନଦୀ ଅତିକ୍ରମ କରି ୮-୧୦ ମାଇଲ ରାସ୍ତା ଗଲା ଉତ୍ତାରୁ ଗୁରୁ ସୁନ୍ଦର ବାବାଜୀଙ୍କ ମଠ ନିକଟରେ ପହଞ୍ଚିଲୁ । ସେଠାରେ ଗୋଟିଏ ବହୁ ପୁରାତନ ନାତି-ଉଚ୍ଚ ବଟବୃକ୍ଷ ଥିଲା । ତହିଁ ନିକଟରେ ସାଧୁଙ୍କର ଆଶ୍ରମ ଥିଲା । ବୃକ୍ଷଟିର ଶାଖାପ୍ରଶାଖା ଏପରି ଘୁମ୍ବା ବିସ୍ତାର କରିଥିଲା ଯେ ଦିନରେ ସେ ସ୍ଥାନ ବଡ଼ ସୁଶୀତଳ ବା ଥଣ୍ଡା ଜଣାପଡ଼ୁଥିଲା । ସେଥିଯୋଗୁ ଲୋକେ ତାହାକୁ 'କୁଞ୍ଜବର' ବୋଲି କହୁଥିଲେ । ବାବାଜୀ ଆମ୍ଭମାନଙ୍କର ଆଗମନ ପଥକୁ ଅପେକ୍ଷା କରି ବରଗଛ ତଳେ ଖଣ୍ଡିଏ ବଡ଼ ଆସନ ପକାଇ ଶିଷ୍ୟମାନଙ୍କ ସଙ୍ଗେ ବସି ରହିଥିଲେ । ଆମ୍ଭେମାନେ ପହଞ୍ଚିଲାରୁ ବାବାଜୀ ଆମ୍ଭମାନଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ପାଛୋଟି ନେଇଥିଲେ; କିନ୍ତୁ ଆମ୍ଭେମାନେ ପାଶ୍ଚାତ୍ୟ ରୀତି ଅନୁଯାୟୀ କରମର୍ଦ୍ଦନ କରିଥିଲୁ ।

ତତ୍ପରେ ବାବାଜୀ ଓ ଆମ୍ଭେମାନେ ଯାଇ ଏକ ଆସନରେ ଆଣ୍ଠୁପାରି ବସିଲୁ । ବାବାଜୀ ଦେଖିବାକୁ ଅତିଶୟ ଗୌରବର୍ଣ୍ଣ, ଉଜ୍ଜ୍ୱଳ ଚକ୍ଷୁ, ସୌମ୍ୟ ମୂର୍ତ୍ତି ଏବଂ ମଧ୍ୟମାକୃତିର ମନୁଷ୍ୟ । ତାହାଙ୍କର

*

Digitized by PPRACHIN, SOA

ଶରୀର ସ୍ଥୂଳ, ଓଷ୍ଠରେ ହସ ଲାଗି ରହୁଥାଏ । ମୁଖମଣ୍ଡଳ ବଲିଷ୍ଠତାର ପରିଚାୟକ ଥିଲା । ସେ ଅନ୍ୟାନ୍ୟ ବାବାଜୀଙ୍କ ପରି ପାଉଁଶବୋଳା ଜଟାଧାରୀ ସାଧୁ ନ ଥିଲେ । ସେ ଅଣ୍ଟାରେ ଗୋଟିଏ ଲୁହା ଜଞ୍ଜିର ବାନ୍ଧି ଖଣ୍ଡିଏ କୌପୀନ ପିନ୍ଧୁଥିଲେ । ଏହାଛଡ଼ା ତାହାଙ୍କର ଦ୍ୱିତୀୟ ବସ୍ତ୍ର ନ ଥିଲା । ସେତେବେଳେ ସେ ଯଦିଓ ଖୁବ୍ ବୁଢ଼ା ହୋଇ ଯାଇଥିଲେ ତଥାପି ତାହାଙ୍କର ବୟସ ପ୍ରାୟ ୫୦ ବର୍ଷ ପରି ଅନୁମାନ ହେଉଥିଲା । ତାହାଙ୍କର ରୂପ ଅତି ଲାବଣ୍ୟଯୁକ୍ତ ଥିଲା । ପ୍ରଥମ ଆଳାପ ପରେ ଆମ୍ଭେମାନେ ଧର୍ମ ବିଷୟରେ ଆଲୋଚନା କଲୁ । ଆଲୋଚନା ସମୟରେ ଆମ୍ଭେମାନେ ଅନୁଭବ କଲୁ ଯେ ସେ ଜଣେ ଅସାଧାରଣ ବିଜ୍ଞ ପଣ୍ଡିତ ଅଟନ୍ତି । ତାହାଙ୍କର ନାନା ଶାସ୍ତ୍ରରେ ପାରଦର୍ଶିତା ସଙ୍ଗେ ବିଚକ୍ଷଣ ବୁଦ୍ଧି ଦେଖି ଅବାକ୍ ହୋଇ ପଡ଼ିଥିଲୁ । ଆମ୍ଭେମାନେ ଖ୍ରୀଷ୍ଟଧର୍ମର ଯେଉଁସବୁ ପୁସ୍ତକ ତାହାଙ୍କର ଶିଷ୍ୟମାନଙ୍କ ହସ୍ତରେ ଦେଇଥିଲୁ, ସେ ତାହା ତନ୍ନ ତନ୍ନ କରି ପଢ଼ିଲା ଭଳି ବୋଧ ହେଉଥିଲା । ତାହାଙ୍କର ସ୍ମରଣ ଶକ୍ତି ଏତେ ପ୍ରବଳ ଥିଲା ଯେ ଯାହା କଳ୍ପନା କରି ହେବନାହିଁ । ଏହା ଦେଖି ପାଦ୍ରୀମାନେ ତାହାଙ୍କୁ ତିନିଗୋଟି ପ୍ରଶ୍ନ ପଚାରିଥିଲେ—

ପ୍ରଥମ ପ୍ରଶ୍ନ—ଆପଣ ସର୍ବଧର୍ମ ସମନ୍ୱୟର ଭାବ ଲୋକମାନଙ୍କୁ ବୁଝାଉ ଅଛନ୍ତି ; କିନ୍ତୁ ଆପଣଙ୍କର ହିନ୍ଦୁ ଜାତିରେ ଏପରି ଅସ୍ପୃଶ୍ୟତା ଅର୍ଥାତ୍ ଛୁଆଁ ଅଛୁଆଁ ଭେଦଭାବ ଦେଖାଯାଏ କାହିଁକି ?

ପ୍ରଥମ ପ୍ରଶ୍ନର ଉତ୍ତର —ସାଧୁ କହିଲେ, “ଯେ ପର୍ଯ୍ୟନ୍ତ ଲୋକେ ଅଜ୍ଞାନ ଅନ୍ଧକାରରେ ପଡ଼ିଥାଆନ୍ତି, ସେ ପର୍ଯ୍ୟନ୍ତ ତାଙ୍କର ଛୁଆଁ ଅଛୁଆଁ ଭାବ ଥାଏ । ପ୍ରକୃତ ଭଗବତ୍ ଜ୍ଞାନ ଲାଭ କଲାପରେ ଭେଦ ବା ଛୁଆଁ ଅଛୁଆଁ ଭାବର ସ୍ଥାନ ନାହିଁ । ଯେପରି ତୁମ୍ଭେମାନେ ଓ ମୁଁ ଏକ ଆସନରେ ବସିଅଛୁ ।” ଆଉରି ଗୋଟିଏ ଦୃଷ୍ଟାନ୍ତ ଦେଇ କହିଲେ—“ଦେଖ, ଏହି ଯେ ଲୁଗାଗୁଡ଼ିକ ଆମ୍ଭମାନଙ୍କ ସମ୍ମୁଖରେ ଶୁଖୁଅଛି, ସେଗୁଡ଼ିକ ନାନା ଜାତିର ଓ ନାନା ଲୋକଙ୍କର ; କିନ୍ତୁ ସୂର୍ଯ୍ୟ, ଜାତି ବର୍ଣ୍ଣ ନିର୍ବିଶେଷରେ ସମାନ ଉତ୍ତାପ ଦେଇ ଶୁଖାଉଛି ।

Digitized by PPRACHIN, SOA

ତାହାଠାରେ କୌଣସି ପ୍ରକାର ଭେଦଭାବ ନାହିଁ । ସେ ସମସ୍ତଙ୍କର ଅଟେ । ସେହିପରି ଲୋକେ ଜ୍ଞାନ ଜ୍ୟୋତି ଦର୍ଶନ କଲେ, ଅର୍ଥାତ୍ ଦିବ୍ୟଦୃଷ୍ଟି ଲାଭ କଲେ ଅଜ୍ଞାନ ଅନ୍ଧକାର ଆପେ ଆପେ ମିଳାଇଯାଏ । ଅନ୍ନ, ବସ୍ତ୍ର ଓ ଜ୍ଞାନ ଜଗତରେ ବଡ଼ ଦାନ ବୋଲି ପଣ୍ଡିତଗଣ କହି ଅଛନ୍ତି । ଅନ୍ନ, ବସ୍ତ୍ର ନଷ୍ଟ ହୋଇଯାଏ, ଜ୍ଞାନ ନଷ୍ଟ ହୋଇପାରେ ନାହିଁ କି ଚୋର ତାହାକୁ ଚୋରି କରି ପାରେନାହିଁ କିମ୍ବା ସୁନା ରୁପା ବହୁମୂଲ୍ୟ ପଦାର୍ଥ ଦେଇ ଜ୍ଞାନ କିଣାଯାଇ ପାରେ ନାହିଁ । ଆମ୍ଭମାନଙ୍କର ହିନ୍ଦୁଧର୍ମରେ ବା ଶାସ୍ତ୍ର ପୁରାଣରେ ଏହି ସଂକୀର୍ଣ୍ଣ ଭାବ ନାହିଁ । ଗୀତାରେ ଶ୍ରୀକୃଷ୍ଣ ଜଗତଟାକୁ ତାହାଙ୍କର କୁଟୁମ୍ବ ବୋଲି କହିଛନ୍ତି ଓ ସେହି ଆଦର୍ଶରେ ସମସ୍ତଙ୍କୁ ଚଳିବାକୁ ଉପଦେଶ ଦେଇ ଅଛନ୍ତି ।” ଆହୁରି ମଧ୍ୟ କହିଲେ ଯେ ଆମ୍ଭମାନଙ୍କର ଦେଶ, ଜଗନ୍ନାଥଙ୍କ ଦେଶ । ଆମ୍ଭମାନଙ୍କର ଠାକୁର, ଜଗତର ଠାକୁର । ଜଗନ୍ନାଥଙ୍କ ସଭ୍ୟତା ଆର୍ଯ୍ୟ ଓ ଅନାର୍ଯ୍ୟ ମିଶ୍ରିତ ସଭ୍ୟତା । ଜଗନ୍ନାଥଙ୍କ ପ୍ରସାଦ ଜାତି ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏକତ୍ର ବସି ଏକ ପାତ୍ରରେ ଖାଆନ୍ତି । କେହି କାହାରିକୁ ଘୃଣା କରନ୍ତି ନାହିଁ । ସେହି ଜଗନ୍ନାଥଙ୍କ ମନ୍ଦିର ନିକଟରେ ବିଶାଳ ସମୁଦ୍ର ଓ ସ୍ୱର୍ଗଦ୍ୱାର ଶ୍ମଶାନ ଶୋଭା ପାଉଅଛି, ଯାହାକି ନଶ୍ୱର ଜଗତର ଐକ୍ୟ ଦେଖାଇ ଦେଉଛି । ଏହି ଆଦର୍ଶ ଶ୍ରେଷ୍ଠ ଆଦର୍ଶ ।

ଦ୍ୱିତୀୟ ପ୍ରଶ୍ନ—ବାଇବେଲରେ ଥିବା ଦଶ ଆଜ୍ଞା ସମ୍ବନ୍ଧରେ ଆପଣଙ୍କର ମତ କ’ଣ ?

ଦ୍ୱିତୀୟ ପ୍ରଶ୍ନର ଉତ୍ତରରେ ସାଧୁ କହିଥିଲେ ଯେ ଏହା ସମ୍ପୂର୍ଣ୍ଣ ସତ୍ୟ ଅଟେ । ଏହା ଆମ୍ଭମାନଙ୍କ ହିନ୍ଦୁଧର୍ମର ମୌଳିକ ନୀତି ମଧ୍ୟ ଅଟେ । ଏହି ନୀତିକୁ ଲୋକମାନେ ବରାବର ପାଳିଲେ ଆତ୍ମ-ଭେଦ ଜ୍ଞାନ ରହିବ ନାହିଁ, ପରସ୍ପର ପରସ୍ପରକୁ ପବିତ୍ର ପ୍ରେମ ଦେବେ ଓ ଏହି ପ୍ରେମ ହିଁ ସ୍ୱର୍ଗପ୍ରାପ୍ତି ବା ଭଗବାନଙ୍କ ପଦାରବିନ୍ଦ ଲାଭର ଏକମାତ୍ର ପଥ । ଏହା କେବଳ ଯୋଗୀମାନେ ଯୋଗ ସାଧନ ଦ୍ୱାରା ଲାଭ କରନ୍ତି ।

Digitized by PPRACHIN, SOA

୩ୟ ପ୍ରଶ୍ନ—ଯୀଶୁଖ୍ରୀଷ୍ଟଙ୍କର କ୍ରୁଶରେ ପ୍ରାଣଦାନର ମହତ୍ତ୍ୱ କ'ଣ ?

୩ୟ ପ୍ରଶ୍ନ ଶୁଣିବା ମାତ୍ରେ ସାଧୁ କହିଥିଲେ ଯେ ଏହିଠାରେ ଯୀଶୁଙ୍କର ମହାମାନବତା, ଈଶ୍ୱରଙ୍କ ପୁତ୍ରତ୍ୱ ଓ ବିଶ୍ୱଭ୍ରାତୃଭାବ ଦେଖା ଦେଇଅଛି । କାରଣ ଫାଶିକାଠରୁ ଜଣକୁ ମୁକ୍ତ ଦେଇ ନିଜେ ଫାଶିକାଠରେ ଝୁଲି ସମସ୍ତ ମାନବଙ୍କୁ ମୁକ୍ତି ମାର୍ଗକୁ ନେଇ ପାପଭାର ଲାଘବ କରିଅଛନ୍ତି । ଏହା କମ୍ ଗୌରବର କଥା ନୁହେଁ ।

ଏହିପରି ଭାବ ସାଧୁଙ୍କର ଦେଖି ଓ ଶୁଣି ଆମ୍ଭେମାନେ ବହୁ ଆନନ୍ଦ ଉପଭୋଗ କଲୁ । ସେ ଆମ୍ଭମାନଙ୍କର ଖାଇବା ପାଇଁ ଦୁଧ ଓ ଭାତର ଆୟୋଜନ କରିଥିଲେ । ଆମ୍ଭେମାନେ ସାଧୁଙ୍କ ପରିଚର୍ଯ୍ୟାରେ ସନ୍ତୁଷ୍ଟ ହୋଇ ପ୍ରସାଦ ସେବନ କରି ଫେରିଲୁ ।

ଆଉ ଦିନେ ଆମ୍ଭେମାନେ ଗୁରୁଙ୍କ ଆଶ୍ରମକୁ ଯାଇଥିଲୁ । ସେତେବେଳେ ବାବାଜୀ ଧ୍ୟାନମଗ୍ନ ଥିଲେ । ଆମ୍ଭେମାନେ କୌତୂହଳ-ବଶତଃ ତାଙ୍କ ଆଶ୍ରମର ସବୁଆଡ଼ ତନ୍ନ ତନ୍ନ କରି ଦେଖିଥିଲୁ ଯେ ସାଧୁ ଦେବଦେବୀ ପ୍ରତିମା ପୂଜା କରୁଅଛନ୍ତି କି ନାହିଁ । କିନ୍ତୁ ଆଶ୍ରମର କୌଣସିଠାରେ ଦେବଦେବୀ ବା ପ୍ରତିମା ଦେଖିଲୁ ନାହିଁ । ସାଧୁଙ୍କର ଧ୍ୟାନଭଗ୍ନ ହେବାମାତ୍ରେ ସେ ଆମ୍ଭମାନଙ୍କୁ ଦେଖି ଆନନ୍ଦିତ ହେଲେ ଓ ଆମ୍ଭେମାନେ ତାହାଙ୍କୁ ଅଭିବାଦନ କଲୁ । ତାହାଙ୍କ ଶିକ୍ଷାକେନ୍ଦ୍ରରେ ଥିବା ପୁସ୍ତକାଗାରରୁ ବହୁ ପୁସ୍ତକ, ପୋଥି ଆଦି ଦେଖି କହିଲୁ ଯେ—ମରହଟ୍ଟାମାନେ ଚାଲିଯିବାରୁ ଅନେକ ଟୋଲ ଓ ବିଦ୍ୟାଳୟ ଭାଙ୍ଗି-ରୁଜି ପଡ଼ୁଛି । ଆଉ ଇଂରେଜମାନେ ନୂତନ ଶାସକ ହୋଇ ଆସିଛନ୍ତି । ଆପଣ ସେହି ଭଙ୍ଗାରୁଜା ଟୋଲ ବା ବିଦ୍ୟାଳୟଗୁଡ଼ିକ ପରିଚାଳନା କରନ୍ତୁ, ଯେ ପ୍ରକାର ଆଧୁନିକ ଧରଣର ଶିକ୍ଷା ତହିଁରେ ଦିଆଯାଇ-ପାରିବ । କାରଣ ଆପଣ ଉତ୍କଳର ଶିକ୍ଷାଦାତା ଓ ଆପଣଙ୍କର ଆଶ୍ରମ ଉତ୍କଳର ଶିକ୍ଷାକେନ୍ଦ୍ର ଅଟେ ।

ଏଥିରୁ ପାଠକ ପାଠିକାମାନେ ସ୍ପଷ୍ଟ ଅନୁମାନ କରିପାରିବେ ଯେ ସାଧୁଙ୍କର ପ୍ରଭାବ କିପରି ଥିଲା ?

Digitized by PPRACHIN, SOA

ସାଧୁ ସୁନ୍ଦର ଦାସ ତାହାଙ୍କର ମତକୁ କଥାରେ ଅର୍ଥାତ୍ ଗଳ୍ପ ଛଳରେ ଏପରି ବ୍ୟକ୍ତ କରୁଥିଲେ ଯାହାକି ସମସ୍ତେ ଅନାୟାସରେ ବୁଝିପାରୁଥିଲେ ।

## ସାଧୁ ଏବଂ ଉତ୍କଳର ପ୍ରଥମ ପତ୍ରିକା ବା ଖବରକାଗଜ

ବଙ୍ଗଳାରେ ଯେତେବେଳେ ରାଜା ରାମମୋହନ ରାୟ "ସମ୍ବାଦ କୌମୁଦୀ" ନାମକ ଖବରକାଗଜ ପ୍ରକାଶ କରୁଥିଲେ, ତତ୍ପୂର୍ବରୁ ଅର୍ଥାତ୍ ମରହଟ୍ଟାମାନଙ୍କ ଶାସନ ସମୟରୁ ସାଧୁ ସୁନ୍ଦର କୁଞ୍ଜବର ଗ୍ରାମରୁ "କୁଞ୍ଜବର ପତ୍ର" ନାମକ ସମ୍ବାଦପତ୍ର ହାତରେ ଲେଖି ପ୍ରକାଶ କରୁଥିଲେ । ସେଗୁଡ଼ିକ ତାଳପତ୍ର ଓ କାଗଜରେ ଲେଖା ହେଉଥିଲା । ସାଧୁ ସ୍ୱୟଂ ପତ୍ରିକାର ସମ୍ପାଦକ ଥିଲେ । ଗଙ୍ଗାଧର ଷଡ଼ଙ୍ଗୀ ଓ ରାମଚନ୍ଦ୍ରଜୀ ଯାଚକ ତାହାଙ୍କୁ ସହକାରୀ ସମ୍ପାଦକ ରୂପେ ସାହାଯ୍ୟ କରୁଥିଲେ । ସମସ୍ତ ବିଷୟ ଲେଖା ହୋଇ ପ୍ରକାଶ ହେବା ପୂର୍ବରୁ ବୈଦାନ୍ତିକ ସ୍କୁଲର ଗୁରୁ ଓ ଶିକ୍ଷକଙ୍କ ଦ୍ୱାରା ସମାଲୋଚିତ ହେଉଥିଲା । ଏଥିରେ ରାଜନୀତି, ଧର୍ମନୀତି, ସମାଜ ସଂସ୍କାର ଓ ଖ୍ରୀଷ୍ଟ ସମ୍ବନ୍ଧୀୟ ଦାର୍ଶନିକ ପ୍ରଶ୍ନ ସମୂହର ଉତ୍ତର ପରିଷ୍କାର ଭାବେ ବୁଝାଇ ଲେଖୁଥିଲେ । ଏହି 'କୁଞ୍ଜବର ପତ୍ର'ରେ ଦେଶର ସ୍ୱାସ୍ଥ୍ୟ, ଶିକ୍ଷା, ଶିଳ୍ପ, ଗୋ, କୃଷି, ବାଣିଜ୍ୟ, ବ୍ରହ୍ମବିଦ୍ୟା, ସଙ୍ଗୀତ, ନାନା ଶାସ୍ତ୍ରର ତତ୍ତ୍ୱ, ଦେଶ-ଜାତିର ଅଧଃପତନର କାରଣମାନ ନାନା ସଠିକ ଦୃଷ୍ଟାନ୍ତ ସହ ପ୍ରକାଶ ପାଉଥିଲା ।

ଏହି ସମ୍ବାଦପତ୍ରଗୁଡ଼ିକ ହାତରେ ଲେଖା ହୋଇ କଟକ ବଜାରର ନାନା ଆଡ଼େ ମିସିନେରୀ କେନ୍ଦ୍ର ତଥା ରାଜା, ମହାରାଜା ଓ ଜନସାଧାରଣଙ୍କ ମଧ୍ୟରେ ପ୍ରଚୁର କରାଯାଉଥିଲା । କୁଞ୍ଜବର ପତ୍ରର କେତେକାଂଶ ପାଦ୍ରୀମାଙ୍କ ଦ୍ୱାରା ଅନୁବାଦ ହୋଇ ବିଲାତ ପର୍ଯ୍ୟନ୍ତ ପଠା ହେଉଥିଲା ଓ ବିଲାତରେ ମଧ୍ୟ ସାଧୁ ସୁନ୍ଦର ଦାସଙ୍କ ମୀମାଂସା ବାପ୍ଟିଷ୍ଟ ମିସିନେରୀ ରିପୋର୍ଟ ଓ ବାପ୍ଟିଷ୍ଟ ମିସିନେରୀ ଜରନାଲ କାଗଜମାନଙ୍କରେ ପ୍ରକାଶ ପାଉଥିଲା । ଓଡ଼ିଶାକୁ ଯେତେବେଳେ ଇଂରେଜମାନେ ଆସିଥିଲେ; କିନ୍ତୁ ଇଂରେଜୀ ଭାଷା ଚଳ ନ ଥିଲା ବା

Digitized by PPRACHIN, SOA

କେବଳ ଇଂରାଜୀ ଭାଷାରେ ଶିକ୍ଷିତ ହୋଇ ନ ଥିଲେ । ଏପରି ଜଣେ ସାଧୁଙ୍କ ଦ୍ୱାରା ଏ ପ୍ରକାର କାର୍ଯ୍ୟ ହେଉଥିଲା, ଏହା କମ୍ ଗୌରବର କଥା ନୁହେଁ । ଏହି ପତ୍ରର ପ୍ରଚ୍ଛରକୁ ଲୋକେ ଘୋର ଭୟ କରୁଥିଲେ । ଏହା ଓଡ଼ିଆର ସର୍ବ ପ୍ରଥମ ଶକ୍ତିଶାଳୀ ପତ୍ର ଅଟେ । ଆମ୍ଭେମାନେ କୁଜୀବର ପତ୍ରର ସାମାନ୍ୟ ଅଂଶ ଯାହାକି ଇଂରାଜୀ ମିସିନେରୀମାନଙ୍କ ଭାଷା ଓ ଭାବଭଙ୍ଗୀରୁ ଅନୁବାଦ ହୋଇଥିଲା, ତହିଁରୁ ତର୍ଜମା କରି ପ୍ରକାଶ କଲୁ—

## କୁଜୀବର ପତ୍ରର ଅନୁବାଦ

୧୮୨୭ ସାଲ ନଭେମ୍ବର ମାସରେ ସଟନ ସାହେବ ସାଧୁଙ୍କ ନମ୍ନ ସମ୍ବାଦପତ୍ରଟି ଇଂରାଜୀରେ ଅନୁବାଦ କରି ବିଲାତ ମିସନକୁ ପଠାଇଥିଲେ । ତହିଁରେ ସାଧୁ ସୁନ୍ଦର ଇଂରାଜ ଶାସକ ଓ ମିସିନେରୀ-ମାନଙ୍କୁ କୁଜୀବର ପତ୍ର ଦ୍ୱାରା ପଚାରୁଥିଲେ—

୧—ହେ ଅମୃତ ସନ୍ତାନଗଣ ! ତୁମ୍ଭେମାନେ ଈଶ୍ୱରଙ୍କ ଶକ୍ତି ଲାଭ କରିଅଛ । ତୁମ୍ଭେମାନେ ୧୮୦୦ ବର୍ଷ ହେବ ଜନ୍ମଲାଭ କରିଅଛ । ଏ ଅନ୍ଧାର-ସଂସାର ପାଇଁ କ'ଣ କରିଅଛ ?

ମୁଁ ଗୋଟିଏ ଗରିବ ହିନ୍ଦୁ ବୈଷ୍ଣବ ଓ ଦୁଃଖୀ । ମୁଁ ତୁମ୍ଭମାନଙ୍କୁ ଭୂମି, ହାତୀ, ଘୋଡ଼ା, ଟଙ୍କା, ସୁନା, ପାଲିଙ୍କି ଓ ଡୋଲି ପ୍ରଭୃତି ମାଗୁ ନାହିଁ । କିନ୍ତୁ ଏହି ଉତ୍କଳୀୟ ପ୍ରଜାମାନଙ୍କୁ ଈଶ୍ୱରଙ୍କ ନିୟମ ମାନି ଚଳିବାକୁ ହେଲେ କି ପ୍ରକାର ଶିକ୍ଷା ଦେବା ଦରକାର ? ହେ ପବିତ୍ର ଲୋକ ! ଏହିକଥା ତୁମ୍ଭମାନଙ୍କୁ ପଚାରୁଅଛୁ ?

୨—ପୁରୀ ହିନ୍ଦୁମାନଙ୍କର ବୈକୁଣ୍ଠ ସ୍ଥାନ ; କିନ୍ତୁ ସେଠାକାର ଲୋକମାନେ ପରଦାର, ଚୋରି, ନିଷ୍ଠୁରତା, ଯଥା (ଭ୍ରୂଣହତ୍ୟା) ବା ନିର୍ଦ୍ଦୋଷମାନଙ୍କର ହତ୍ୟା, ସତୀତ୍ୱ ନଷ୍ଟ, ମହାପ୍ରସାଦ ସହିତ ମାଛ ଖାଇବା, ପିତାମାତାଙ୍କୁ ଗାଳି ଓ ମାଡ଼ ଦେବା ପ୍ରଭୃତି କାର୍ଯ୍ୟ କରୁଅଛନ୍ତି । ଏହାସବୁ କ'ଣ ଜଗନ୍ନାଥଙ୍କର ଧର୍ମ ? ଏହିପରି କୁକାର୍ଯ୍ୟ କରି ଲୋକେ ଆଣୁଛନ୍ତି ବାତ, ଗୋଦର, କୁଷ୍ଠ, ଗଳଦ, ଘା, ଦରଦ,

Digitized by PPRACHIN, SOA

କୋଷବୃଦ୍ଧି ଓ ଅଜୀର୍ଣ୍ଣ ରୋଗ ଭୋଗୁଅଛନ୍ତି । ଏହି ରକମର ଲୋକେ ପୁଣି ଜଗନ୍ନାଥଙ୍କ ସେବକ ?

୩—ହେ ପରବଶ ଲୋକ ! ଏହି ଲୋକମାନଙ୍କର ଠାକୁରଙ୍କ ନାମ ଶୁଣ । ଠାକୁର ଅର୍ଥାତ୍ ଯାହାକୁ ଶୁଆନ୍ତି, ବସାନ୍ତି ଓ ପୂଜା କରନ୍ତି । ସେସବୁ ସୁନା, ରୁପା, ପିତ୍ତଳ, ପଥର, କାଠ, ନିଆଁ ଓ ପାଣି ପ୍ରଭୃତିରେ ତପ୍ୟାର ହୋଇଅଛନ୍ତି । ଏହି ଲୋକମାନେ ଏହିସବୁ ଠାକୁରଙ୍କ ପୂଜକ ହୁଅନ୍ତି ଏବଂ ଠାକୁରଙ୍କୁ ପୂଜିବା ପାଇଁ ଅନେକେ ସର୍ବସ୍ୱାନ୍ତ ହୁଅନ୍ତି । ତୀର୍ଥଯାତ୍ରା କରନ୍ତି ଓ ବହୁତ ଶାରୀରିକ କଷ୍ଟ ଭୋଗନ୍ତି ।

ବ୍ରାହ୍ମଣ ବେଦ ମାନୁ ନାହିଁ, ଦୁଃଖୀକୁ ଦୟା କରୁନାହିଁ । ହେ ଖ୍ରୀଷ୍ଟାନ ଶାସକମାନେ ! ତୁମ୍ଭେମାନେ ଧନୀ ଓ ଗରିବମାନଙ୍କୁ ଖୁଆଉଅଛ ; କିନ୍ତୁ ଗରିବ ଓ ଦୁଃଖୀମାନେ ଖାଇବା ଅଭାବରୁ ମରୁଅଛନ୍ତି । ହେ ଧାର୍ମିକ ପିଲାଏ ! ଗରିବ, ଦୁଃଖୀମାନଙ୍କର ରୋଦନ ଶୁଣ ।

୪—ଚୋରଙ୍କୁ ଧରି ଦଣ୍ଡ ଦେଉଅଛ, ଡକାୟତମାନଙ୍କ ଦୋଷ ଦେଖି ଦଣ୍ଡ ଦେଉଅଛ । ତୁମ୍ଭମାନଙ୍କ ଆଦେଶରେ ନିମିଷକେ ସେନା ପ୍ରସ୍ତୁତ ହୋଇପାରେ; କିନ୍ତୁ ଜନଗଣଙ୍କୁ ଈଶ୍ୱରଙ୍କ ବାଣୀ ଶିକ୍ଷା ଦେବାକୁ କାହିଁକି ନିୟମ କରୁନାହଁ ?

ତୁମ୍ଭେମାନେ ଭଲ ଗଛର ଫଳ । ଈଶ୍ୱରଙ୍କ ବାଣୀ ମାନି ଚଳ । ପ୍ରଜାମାନଙ୍କୁ ସେହି ନିୟମରେ ଚଳିବାକୁ ବାଧ୍ୟ କର । ମରହଟ୍ଟାମାନେ ଡକାୟତ ଥିଲେ ସତ; କିନ୍ତୁ ଦୁଃଖୀ ଦରିଦ୍ରଙ୍କୁ ଦେଖୁଥିଲେ । ଇଉରୋପୀୟାନମାନେ ବିଶ୍ୱସ୍ତ ଶାସକ; କିନ୍ତୁ ତାଙ୍କର ଶାସନ ଶଠତାରେ ପରିପୂର୍ଣ୍ଣ । "ପିତା ଓ ପୁତ୍ରମାନେ", ଚତୁର୍ଦ୍ଦିଗ ତୁମ୍ଭେ ଶାସନ କରୁଛ । ହେ ଉତ୍ତମ ଲୋକ, ପ୍ରଜାମାନେ ଦୁଷ୍ଟ ହେଲେଣି, ଭୁଲ୍ ବାଟରେ ଯାଉଅଛନ୍ତି, ସେଥି ନିମନ୍ତେ ଲୁଗାପଟା ଅଭାବ ହେଉଅଛି ।

Digitized by PPRACHIN, SOA

୫—ଶାସକମାନେ ଲୋକମାନଙ୍କର ପରୀକ୍ଷକ ସ୍ୱରୂପ, ହେ ପିତା ଓ ପୁତ୍ରମାନେ ତୁମ୍ଭେମାନେ, ନଜେ ଆଦର୍ଶ ହୋଇ ଈଶ୍ୱରଙ୍କ ବାଣୀ ଅନୁଯାୟୀ ଚଳ ଲୋକଙ୍କୁ ଚଳାଅ । ଯଦ ଏସବୁ କରିବ, ତାହାହେଲେ ଭଲ, ନୋହିଲେ ପଥର ସଙ୍ଗେ ସମାନ । ଆଉ କ'ଣ ଲେଖିବ ? ଧର୍ମ ସତ୍ୟ, ଧର୍ମ ସତ୍ୟ, ଧର୍ମ ସତ୍ୟ ।

ଏହି ଯେଉଁ କୁଜାବର ପତ୍ର ଜଣାଗଲା, ଏହିପରି ଯେ କେତେ ପତ୍ର ସାଧୁ ସୁନ୍ଦର ଦାସଙ୍କ ଆଶ୍ରମରୁ ପ୍ରଚ୍ଚର ନ ହୋଇଥିବ ତାହା କଏ କହିପାରିବ ? କେବଳ ପାଦ୍ରୀମାନଙ୍କ ରିପୋର୍ଟରୁ ଏହି ଗୋଟିଏ କୁଜାବର ପତ୍ରର ଅଂଶ ପ୍ରକାଶ କଲୁ ଓ ପରେ ଅନ୍ୟାନ୍ୟ ପ୍ରକାଶ କରିବୁ । କୁଜାବର ପତ୍ର ପାକ୍ଷିକ, ସାପ୍ତାହିକ ଓ ଦୈନକ ଭାବେ ପ୍ରକାଶ ପାଉଥିଲା ।

## ସାଧୁ ସୁନ୍ଦରଙ୍କର କାରାବାସ

ସାଧୁଙ୍କର କାରାବରଣ ବିଷୟରେ ଆମ୍ଭେମାନେ ଏତିକ ଦେଖିବାକୁ ପାଉଅଛୁ ଯେ ଉତ୍କଳରେ ଖ୍ରୀଷ୍ଟଧର୍ମର ଆଦ୍ୟ ପ୍ରଚ୍ଚର ଓ ତହିଁରେ ହିନ୍ଦୁ ସଭ୍ୟତାର ଏହି ଗୁରୁକୁଳ ଅନ୍ତରାୟ ହେବା ଓ ଉଭୟ ଧର୍ମର ଦାର୍ଶନକ ତତ୍ତ୍ୱ ନେଇ ପରସ୍ପର ପରସ୍ପରକୁ ନାନା ପ୍ରକାର ଛନ୍ଦରେ ଚହିତ କର ସ୍ୱ ସ୍ୱ ଧର୍ମର ପ୍ରଭାବ ସଙ୍ଗେ ଗୌରବ ବର୍ଦ୍ଧନର ଚେଷ୍ଟା ଓ ତାହା ମଧ୍ୟରେ ସଂଘର୍ଷ, ଏହାହିଁ ମୂଳ କାରଣ ଅଟେ ।

୧୮୩୦ ମସିହା ଅଗଷ୍ଟ ୧ ତାରିଖ ଦନ ସାଧୁ ସୁନ୍ଦର କଟକ ସହରଠାରେ ବିରାଟ ଜନଗହଳରେ କାରାବରଣ କରିଥିଲେ । ସହରଟି ସେଦନ ଜନରବରେ ଉଚ୍ଛୁଳ ପଡ଼ୁଥିଲା । କାହିଁକ ଓ କ କାରଣରୁ ସାଧୁଙ୍କୁ କାରାବରଣ କରିବାକୁ ହୋଇଥିଲା, ତାହା ଏହି—

ଜଣେ ସ୍ତ୍ରୀ ଲୋକ ସମାଜ ବରୁଦ୍ଧ ଓ ଈଶ୍ୱରଙ୍କ ମତରୁ ଅମତ କାର୍ଯ୍ୟ କରିବାରୁ ସେ ତାହାକୁ ଭର୍ତ୍ସନା କରିଥିଲେ ବୋଲି ମିସିନେରୀ-ମାନଙ୍କ ଲେଖାରୁ ଜଣାପଡ଼ୁଛି । ଏହା ମିଛ ନୁହେଁ; କାରଣ ସେ ଈଶ୍ୱରଙ୍କ ମତ ବରୁଦ୍ଧ କର୍ମ ଓ ଧର୍ମଦ୍ୱେଷୀଙ୍କୁ ଭଲପାଉ ନ ଥିଲେ ।

Digitized by PPRACHIN, SOA

ପାଦ୍ରୀମାନଙ୍କର ସାଧୁଙ୍କୁ ଖ୍ରୀଷ୍ଟାନ କରିବାର ଆଶା ଓ ପ୍ରୟାସ ବୃଥା ହେଲା । ସେ ପାଦ୍ରୀମାନଙ୍କ କର୍ମର ତୀବ୍ର ପ୍ରତିବାଦ କରିବାରୁ ପାଦ୍ରୀମାନେ ସ୍ତ୍ରୀ ଲୋକଟିକୁ ଆଣି ମାଜିଷ୍ଟ୍ରେଟଙ୍କ ନିକଟ ଖବର ଦେଇ, ପୋଲିସ ହାତରେ ସାଧୁଙ୍କୁ ଜେଲ୍ ମଧ୍ୟରେ ପ୍ରାୟ ଏକମାସ କାଳ କାରାରୁଦ୍ଧ କରିଥିଲେ । ସେହି ସମୟରେ ତାହାଙ୍କର ମାହାତ୍ମ୍ୟ ଏପରି ହୋଇଥିଲା ଯେ, ଅନେକେ କହନ୍ତି—ସୁନ୍ଦର ଦାସଙ୍କର ଏପରି ଐଶ୍ୱରିକ ଶକ୍ତି ଥିଲା ଯେ ଲୋକେ ତାହାଙ୍କ ରୂପକୁ ଯେକୌଣସି ସ୍ଥାନରେ, ବାହାରେ, ଜେଲ୍ ମଧ୍ୟରେ ଓ ବାରବାଟି ପଡ଼ିଆରେ ସର୍ବଦା ଦେଖି ପାରୁଥିଲେ । ଏହି ଭୌତିକ କ୍ରିୟା ସମ୍ବନ୍ଧରେ କେତେକ ହିନ୍ଦୁ ଖ୍ରୀଷ୍ଟାନ୍ ପାଦ୍ରୀଙ୍କୁ କହିଥିଲେ ଯେ ସାଧୁ ସୁନ୍ଦର ଖ୍ରୀଷ୍ଟଙ୍କ ପରି ଅଲୌକିକ କାର୍ଯ୍ୟ କରୁଅଛନ୍ତି । ସେ ସ୍ୱୟଂ ଖ୍ରୀଷ୍ଟ ଅଟନ୍ତି ।

ପାଦ୍ରୀ ଏହି କଥାର ଉତ୍ତରରେ ବୁଝାଇଲେ ଯେ ଏହିପରି କେତେ ଭଣ୍ଡ ଖ୍ରୀଷ୍ଟ ବାହାରିବେ । ତୁମ୍ଭେମାନେ ତହିଁରେ ବିଶ୍ୱାସ କର ନାହିଁ । ନିମ୍ନରେ ପାଦ୍ରୀଙ୍କ ଉକ୍ତି ସେମାନଙ୍କ ଭାଷାରେ ଅର୍ଥାତ୍ ଇଂରାଜୀରେ ଦିଆହେଲା—

"Many false Christ shall rise up, that they shall say, lo here and lo there. I say on to you go ye, not after them."

ଏହି ସମୟରେ ମଧ୍ୟ ପ୍ରବାଦ ଅଛି ଯେ ସାଧୁ ସୁନ୍ଦର ମଲା ମନୁଷ୍ୟକୁ ଜୀଆଁଇ ଦେଇଥିଲେ । ମହାନଦୀ ବଢ଼ି ସମୟରେ ବିନା ନୌକାରେ ନଦୀରେ ଆସନ ପାତି, ସେହି ଆସନ ଉପରେ ବସି ନଦୀ ପାରି ହେଉଥିଲେ । ତାହାଙ୍କର ଏହି ପ୍ରକାର ଅସୀମ ଶକ୍ତି ଦେଖି ବହୁଲୋକ ଶିଷ୍ୟତ୍ୱ ଗ୍ରହଣ କରୁଥିଲେ । ପାଦ୍ରୀମାନଙ୍କ ରିପୋର୍ଟରୁ ଜଣାଯାଏ ଯେ ସାଧୁ ସୁନ୍ଦର ମାଜିଷ୍ଟ୍ରେଟ୍ ସାହେବଙ୍କ ଇଜଲାସରେ ଯେଉଁ ଉକ୍ତି ଦେଇଥିଲେ, ସେଗୁଡ଼ିକ ଖ୍ରୀଷ୍ଟଧର୍ମ ମତକୁ ସାହାଯ୍ୟ କରୁଥିଲା । ଏହି ମତବିରୁଦ୍ଧ କାର୍ଯ୍ୟ ସ୍ତ୍ରୀ ଲୋକଟି କରିବାରୁ ସେ ତାହାକୁ ମତଶିକ୍ଷା ଦେବା ଉଦ୍ଦେଶ୍ୟରେ ଭର୍ତ୍ସନା କରିଥିଲେ । ଏହା

Digitized by PPRACHIN, SOA

ଶୁଣି ମାଜିଷ୍ଟ୍ରେଟ୍ ସାହେବ ତାହାଙ୍କୁ କାରାବାସରୁ ଖଲାସ ବା ମୁକ୍ତ କରିଦେଲେ । ଏହି ସମୟରେ ମଧ୍ୟ କଟକର କେତେକ ଶିକ୍ଷିତ ଲୋକ ଓ ମୋର ପଣଅଜା ଶିଷ୍ୟତ୍ୱ ଗ୍ରହଣ କରିଥିଲେ ।

ସାଧୁ ସୁନ୍ଦର ଜେଲରୁ ଖଲାସ ହେବାମାତ୍ରେ ତାହାଙ୍କୁ ସମ୍ମାନ ଦେଖାଇବା ନିମନ୍ତେ କଟକରେ ଏକ ବିରାଟ ସଭାର ଆୟୋଜନ ହୋଇଥିଲା ଓ ସର୍ବଧର୍ମାବଲମ୍ବୀମାନଙ୍କର ଏକ ପଂକ୍ତି ଭୋଜନର ବ୍ୟବସ୍ଥା କରାଯାଇଥିଲା । ତପୂରେ ସେ ଶିଷ୍ୟମାନଙ୍କ ସଙ୍ଗେ କୁଜାଙ୍ଗର ମଠକୁ ଯାଇ ମହାଯଜ୍ଞରେ ଯୋଗ ଦେଇଥିଲେ ।

ଲେସି ସାହେବ ଲେଖିଛନ୍ତି ଯେ ତାଙ୍କର ଶେଷ ସମୟର ୧୦ ବର୍ଷ ମଧ୍ୟରେ ମହାତ୍ମ୍ୟ ଏପରି ପ୍ରକାଶ ହୋଇଥିଲା ଯେ ତାହା ବର୍ଣ୍ଣନା ବା ତୁଳନା କରାଯାଇ ନ ପାରେ ଅର୍ଥାତ୍ ଅକଥନୀୟ ଓ ଅତୁଳନୀୟ ।

## ସାଧୁଙ୍କ ଉପରେ ୧୪୪ ଧାରା ଜାରୀ

ସାଧୁ ସୁନ୍ଦର ଧର୍ମ ଓ ସତ୍ୟ ନିମନ୍ତେ ପ୍ରାଣ ଦେବାକୁ କୁଣ୍ଠାବୋଧ କରୁ ନ ଥିଲେ । ଧର୍ମ ଓ ସତ୍ୟ ବଚନ ପ୍ରଚାର କରିବାକୁ ବହୁତ ବାଧା ବିଘ୍ନ ଘଟିଥିଲା । ଏକଦା ପୋଲିସ ତାହାଙ୍କ ଉପରେ ୧୪୪ଧାରା ଜାରି କରି କୁଜାଙ୍ଗର ଗ୍ରାମ ଓ କୋକାଖଣ୍ଡ ପ୍ରଗନାରୁ ତାହାଙ୍କୁ ବାହାରି ଯିବା ନିମନ୍ତେ ଆଦେଶ ଦେଇଥିଲେ । ସେ ତାହା ପାଳି ବଜ୍ରକୋଟଠାରେ ରହିଲେ । ପୋଲିସମାନେ ସେମାନଙ୍କ ନିଜର ଭୁଲ୍ ବୁଝିପାରିବାରୁ ସାଧୁ କୁଜାଙ୍ଗରକୁ ଫେରିଆସି ତାଙ୍କର ପୂର୍ବ ପ୍ରଭାବ ବିସ୍ତାର କଲେ ।

ସଟନ ସାହେବ ଲେଖିଅଛନ୍ତି—ସାଧୁ ସୁନ୍ଦର ଦାସଙ୍କୁ ମୁଁ ଦେଖା କରିଥିଲି । ଯଦ୍ୟପି ସେ ଜଣେ ମହାପୁରୁଷ ତଥାପି ଖ୍ରୀଷ୍ଟଧର୍ମ ପ୍ରଚାର ନିମନ୍ତେ ସେ ଗୋଟିଏ ବଡ଼ ଶତ୍ରୁ । ସମୟେ ସମୟେ ସେ କୁଜାଙ୍ଗର ପତ୍ର ନାମକ ଖବରକାଗଜ ପ୍ରକାଶ କରି ତହିଁରେ ତାହାଙ୍କ ହିନ୍ଦୁଧର୍ମ ସମ୍ବନ୍ଧୀୟ ବାର୍ତ୍ତା ଓ ଆମ୍ଭମାନଙ୍କ ଧର୍ମ ସମ୍ବନ୍ଧୀୟ ବିଷୟଗୁଡ଼ିକୁ

Digitized by PPRACHIN, SOA

ଭିନ୍ନ ଭିନ୍ନ କରି ବିଶ୍ଳେଷଣ କରୁଥିଲେ ଓ ଉଭୟ ଧର୍ମର ଭଲମନ୍ଦ ବିଷୟ ତୁଳନା କରି ଲୋକମାନଙ୍କୁ ଉପଦେଶ ଦେଉଥିଲେ । ଏହି ଖବରକାଗଜଗୁଡ଼ିକୁ ବଜାରର ବିଭିନ୍ନ ସ୍ଥାନରେ, ମିସିନେରି କେନ୍ଦ୍ର-ମାନଙ୍କରେ ଅଠା ଦ୍ୱାରା ଲଗାଉଥିଲେ । ତାଙ୍କର ମହାପ୍ରୟାଣର ୪-୫ ବର୍ଷ ପୂର୍ବରୁ ଏପରି ପ୍ରତିଭା ଦେଖାଯାଇଥିଲା ଯେ, ଅସଂଖ୍ୟ ଲୋକ ତାହାଙ୍କର ଶିଷ୍ୟ ହୋଇଥିଲେ । ଏହି ଶିଷ୍ୟମାନେ ଗୁରୁଙ୍କୁ ଦେବତା ପରି ଭକ୍ତି କରୁଥିଲେ ଓ ପୂଜା କରୁଥିଲେ । ଯେଉଁମାନେ କୁକାର୍ଯ୍ୟ କରୁଥିଲେ, ସେମାନେ ସାଧୁଙ୍କ ନିକଟକୁ ଆସି କ୍ଷମା ଭିକ୍ଷା କରୁଥିଲେ ଏବଂ ସାଧୁଙ୍କ ଶରଣାପନ୍ନ ହେଉଥିଲେ ।

## ଗୃହଅଁଲ୍ୟକର ଘଟଣା

୧୮୩୦ ସାଲ ରିପୋର୍ଟରୁ ଜଣାପଡ଼ୁଅଛି ଯେ ସାଧୁ ସୁନ୍ଦର ଦାସଙ୍କ ଦ୍ୱାରା ଗୋଟିଏ ମୋକଦ୍ଦମା ଜିଲ୍ଲା ମାଜିଷ୍ଟ୍ରେଟଙ୍କ ନିକଟରେ ପାଦ୍ରୀମାନଙ୍କ ବିରୁଦ୍ଧରେ କରା ହୋଇଥିଲା । ମୋକଦ୍ଦମାଟି ଏହି ଯେ—

ଖ୍ରୀଷ୍ଟାନ ମିସିନେରିମାନେ ଦୁଇଟି ହିନ୍ଦୁ ମହିଳାଙ୍କୁ ସେମାନଙ୍କ ସ୍ୱାମୀ ବା ଅଭିଭାବକଙ୍କ ବିନାନୁମତିରେ ଡୁବନ କରାଇ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଇଥିଲେ । ଏହି ବିଷୟ ସାଧୁଙ୍କ ପରିଷଦରେ ପ୍ରଥମେ ବିଚାର କରାଗଲା । ସେଥିରେ ସାଧୁ ସୁନ୍ଦର ଏହିପରି ମୀମାଂସା କଲେ କି ସ୍ୱାମୀର ବିନାନୁମତିରେ ଯଦି ସ୍ତ୍ରୀକୁ ଘରୁ କାଢ଼ି ନେଇ ଅନ୍ୟ ଧର୍ମରେ ଦୀକ୍ଷିତ କରାଗଲା, ତାହାହେଲେ କାହିଁକି ମିସିନେରିମାନେ ପର ସ୍ତ୍ରୀ ହରଣ, ଚୋରି ଓ ନାରୀ ପାଇଁ ଦାୟୀ ନ ହେବେ ? ଏଥିପାଇଁ କଲେକ୍ଟରଙ୍କ ନିକଟ ଆପତ୍ତି ଦରଖାସ୍ତ ଆଗତ କରିଥିଲେ । କଲେକ୍ଟର ସାହେବ ଦେଖିଲେ ଯଦି ଏ ମୋକଦ୍ଦମା ଚଳେ, ତାହାହେଲେ ବହୁତ ଗଣ୍ଡଗୋଳ ଘଟିବ । ତେଣୁ ସେ ତାହା ଖାରଜ କରିଦେଲେ ।

ଏଥିରେ ସାଧୁଙ୍କର ଭକ୍ତମାନେ କଲେକ୍ଟରଙ୍କ ବିରୁଦ୍ଧରେ ତତ୍କାଳୀନ ଜିଲା ଜଜ୍ ସାହେବ ମି. ଉଇଲିୟମ ଉଇଲ୍‌କିନସନ୍‌ଙ୍କ ଇଜଲାସରେ ଦରଖାସ୍ତ କଲେ । ଜଜ୍ ସାହେବ ଉଭୟ ତରଫ

Digitized by PPRACHIN, SOA

ଲୋକମାନଙ୍କୁ ଡକାଇ ଏହିପରି ଫଏସଲା କରିଥିଲେ । ସ୍ତ୍ରୀ ଲୋକମାନେ ଯେଉଁ ଗହଣାଗାଣ୍ଠି ଓ ଲୁଗା ପିନ୍ଧିଥିଲେ, ସେଗୁଡ଼ିକୁ ଓ ଶିଶୁସନ୍ତାନଙ୍କୁ ତାହାଙ୍କର ସ୍ୱାମୀଙ୍କୁ ଫେରସ୍ତ ଦେଇଥିଲେ । ଖ୍ରୀଷ୍ଟାନ ମିସିନେରୀମାନଙ୍କୁ ୫୦ ଟଙ୍କା ଜୋରିମାନା ସହ ଫଏଲ ଜାମିନ୍‌ରେ ରଖିଥିଲେ । ହୁକୁମ କରିଥିଲେ ଯେ ଭବିଷ୍ୟତରେ ଏପରି କାର୍ଯ୍ୟ ଆଉ କରିବ ନାହିଁ । ଏଥିଯୋଗୁଁ ମିସିନେରୀମାନଙ୍କ ସପକ୍ଷରେ, ଜଜ୍ ସାହେବଙ୍କ ରାୟ ବିରୁଦ୍ଧରେ ବହୁ ଆନ୍ଦୋଳନ ହୋଇ ୧୮୩୩ ମସିହାରେ କଲିକତା ନିଜାମତ ଅଦାଲତରେ ଆପତ୍ତି ହୋଇଥିଲା । ଏହା ୧୮୩୩ ସାଲ ଅପ୍ରେଲ ମାସ ଅଟେ ।

ଖ୍ରୀଷ୍ଟିୟାନ ଅବ୍‌ଜରଭର କାଗଜ ଜଜ୍ ସାହେବଙ୍କ ରାୟକୁ ବଡ଼ ଯୋର ଦେଇ ପ୍ରତିବାଦ କଲା, କିନ୍ତୁ କୌଣସି ଫଳ ହେଲା ନାହିଁ । ଏହାପରେ ସାଧୁଙ୍କର ଯେଉଁ ଶିଷ୍ୟମାନେ ଖ୍ରୀଷ୍ଟିୟାନ ହୋଇଥିଲେ, ସେମାନେ ସାଧୁଙ୍କ ସମ୍ବନ୍ଧରେ କେତେକ କୁତ୍ସାରଟନା କରିଥିଲେ; କିନ୍ତୁ ଇଉରୋପୀୟ ମିସିନେରୀମାନେ ଏହି କଥାକୁ ସ୍ୱୀକାର କରି ନାହାନ୍ତି, ବରଂ କହିଛନ୍ତି ଯେ ସାଧୁଙ୍କ ଚରିତ୍ର ନିର୍ମଳ ।

## ସାଧୁ ସୁନ୍ଦରଙ୍କ ତିରୋଭାବ

ଲେସି ସାହେବ ଲେଖିଅଛନ୍ତି—ସୁନ୍ଦର ବାବାଜୀ, ଯେ କି ଖ୍ରୀଷ୍ଟଧର୍ମକୁ ବନ୍ଧୁ ଭାବରେ ଆଦର କରୁଥିଲେ ଓ ପରେ ଶତ୍ରୁ ହୋଇ ପାରିଥିଲେ, ସେ ମହାତ୍ମାଙ୍କ ତିରୋଭାବ ବିଷୟ ନ ଲେଖି ରହିପାରୁ ନାହିଁ । ୧୮୩୩ ସାଲ ଏପ୍ରିଲ ମାସ ୧୬ ତାରିଖରେ ଏହି ମହାତ୍ମାଙ୍କର ତିରୋଭାବ ହୋଇଅଛି । ମନୁଷ୍ୟର ଜୀବନ କିଛି ନୁହେଁ । ଏହି କିଛିଦିନ ପୂର୍ବରୁ ମୁଁ ତାହାଙ୍କ ସଙ୍ଗେ ଦେଖା କରିଥିଲି ଓ କଥାବାର୍ତ୍ତା ହୋଇଥିଲା । ସେତେବେଳେ ସେ କେଡ଼େ ଭଲ ଓ ସୁନ୍ଦର ଦେଖା ଯାଉଥିଲେ । ଆମ୍ଭମାନଙ୍କର ଏହି ମିସିନାରୀ ରିପୋର୍ଟରେ ଏ ମହାତ୍ମାଙ୍କର ବିଷୟ ଚିରକାଳ ଅମର ହୋଇ ରହିବ । କାରଣ ଏହାଙ୍କ ବାହୁଚ୍ଛାୟା ତଳେ ଆମ୍ଭମାନଙ୍କ ଖ୍ରୀଷ୍ଟଧର୍ମ ପ୍ରଥମେ ଆଶ୍ରୟ ପାଇଥିଲା । ଆମ୍ଭର କିଛିଦିନ କଟକ ଅବସ୍ଥାନ ସମୟରେ ସୁନ୍ଦର

Digitized by PPRACHIN, SOA

ଦାସଙ୍କ ନିକଟକୁ ଆମ୍ଭମାନଙ୍କର କେତେଗୋଟି ଧର୍ମପୁସ୍ତକ, ଯହିଁରେ କେତେକ ନୂତନ ନିୟମ ଆଦି ଥିଲା ତାହା ପଠାଯାଇଥିଲା ଓ ସେ ସେଗୁଡ଼ିକୁ ଆଦରରେ ଗ୍ରହଣ କରିଥିଲେ । ତହିଁରେ ଲେଖାଥିଲା, ଈଶ୍ୱର ଏକ, ଆମ୍ଭେମାନେ ଜାତି ଧର୍ମ ନିର୍ବିଶେଷରେ ତାଙ୍କର ପୂଜା କରିବା । ଏହା ପୂଜା କରିବାର ପ୍ରକୃତ ବାଟ ଅଟେ ବୋଲି ଗୁରୁ ସୁନ୍ଦରଙ୍କ ମନରେ ଆନନ୍ଦ ଆସିଥିଲା । ସେ ନିଜେ ଇଂରାଜୀ ଭାଷା ପଢ଼ି ଆମ୍ଭମାନଙ୍କର ଧର୍ମପୁସ୍ତକ ସମୂହର ଆଦର ବଢ଼ାଇଲେ । ସେଗୁଡ଼ିକୁ ମଧ୍ୟ ତାହାଙ୍କର ପୁସ୍ତକାଗାରରେ ରଖିଥିଲେ । ସେହି ପୁସ୍ତକରେ ଥିବା ଉତ୍ତମ ନିୟମ ଯାହାକି ତାହାଙ୍କ ଭାବକୁ ଖାପ ଖାଉଥିଲା, ସେ ସମସ୍ତ ଶିଷ୍ୟମାନଙ୍କୁ ବୁଝାଉଥିଲେ ଓ ଏହି ନିୟମଗୁଡ଼ିକ ଭଲ ବୋଲି ମଧ୍ୟ ସ୍ୱୀକାର କରୁଥିଲେ ।

ସାଧୁଙ୍କ ମହାପ୍ରୟାଣ ବିଷୟରେ ଅନେକ ପ୍ରବାଦ ଅଛି । କେତେକଙ୍କ ମତରେ ସେ ଆଖପାଖ ଗ୍ରାମର ଲୋକମାନଙ୍କୁ ହଇଜା ରୋଗରୁ ମୁକ୍ତ କରିବାକୁ ଯାଇ, ନିଜେ ସେହି ରୋଗରେ ଆକ୍ରାନ୍ତ ହୋଇ ପଡ଼ିଲେ ବୋଲି ଶୁଣାଯାଏ ଓ କେତେକ କହୁଛନ୍ତି ଯେ ସନ ୧୮୩୮ ସାଲ ଅପ୍ରେଲ ମାସ ଗୋଧୂଳି ଲଗନରେ ପୂର୍ବରୁ ସେ ନିଜେ ଶିଷ୍ୟମାନଙ୍କୁ ଡାକି କହିଥିଲେ ଯେ, ମୁଁ ଯାହାଙ୍କ କୃପାରୁ ଏହି ମର ଜଗତକୁ ଲୀଳା ଖେଳା କରିବାକୁ ଆସିଥିଲି, ସେ ବର୍ତ୍ତମାନ ମୋତେ ଡାକିଲେଣି । ମୁଁ ତୁମ୍ଭମାନଙ୍କ ପାଖରେ ଆଉ ରହି ପାରିବି ନାହିଁ । ତୁମ୍ଭେମାନେ ମୋ ନିମନ୍ତେ ଦୁଃଖ କରିବ ନାହିଁ । ଏହି ଦେଖ, ପଶୁ, ପକ୍ଷୀ ଆପଣା ଆପଣା ବସାକୁ ଫେରୁଛନ୍ତି, ସୂର୍ଯ୍ୟଦେବ ପଶ୍ଚିମ ଗଗନର ପ୍ରାନ୍ତଦେଶ ଚୁମ୍ବିଲେଣି । ମୁଁ ବର୍ତ୍ତମାନ ତୁମ୍ଭମାନଙ୍କୁ କହୁଛି ଯେ ମୋର ଆଶ୍ରମ ମଧ୍ୟରେ ଜୀବନ୍ତ ସମାଧି ଗ୍ରହଣ କରିବି । ହିନ୍ଦୁଧର୍ମରେ ପୋଡ଼ିବା ଓ ପୋତିବା ଦୁଇଗୋଟି ବିଧି ଅଛି । ତୁମ୍ଭେମାନେ ଗୋଟିଏ ଗର୍ତ୍ତ କର, ଗୋଟିଏ ନୂଆ ପଲିମ ଆଣ ।

ସଙ୍ଗେ ସଙ୍ଗେ ଗାତଟିଏ ଖୋଳା ହେଲା ଓ ପଲିମ ମଧ୍ୟ ଅଣାଗଲା । ଗୁରୁ ଶିଷ୍ୟ ସମସ୍ତେ ମିଶି ଏକତ୍ର ଠିଆ ହେଲେ । ସାଧୁ

Digitized by PPRACHIN, SOA

ଊର୍ଦ୍ଧ୍ୱକୁ ତିନଥର ହାତଯୋଡ଼ ପ୍ରଣାମ କଲେ । ଶିଷ୍ୟମାନଙ୍କୁ ଓ ଅନ୍ୟାନ୍ୟ ସମସ୍ତ ଜଗତକୁ ସ୍ୱସ୍ତିବାଚନ କରି ସମାଧିସ୍ଥ ହେଲେ । ଏହାର ପୂର୍ବରୁ ଶିଷ୍ୟମାନଙ୍କୁ ସାନ୍ତ୍ୱନା ଦେବାବେଳେ କହିଥିଲେ ଯେ "ମୁଁ ପୁଣି ଏ ଜଗତକୁ ଆସିବି ଓ ମୋର କାର୍ଯ୍ୟ ମୁଁ କରାଇ ନେବି ।"

ସାଧୁ ସୁନ୍ଦର ସମାଧି ଗ୍ରହଣ କରିବାର ସମ୍ବାଦ ଯେତେବେଳେ ଜନଗଣ ମଧ୍ୟରେ ଚତୁର୍ଦ୍ଦିଗରେ ବ୍ୟାପିଗଲା, ସେତେବେଳେ ପଶୁ, ପକ୍ଷୀ, କୀଟ, ପତଙ୍ଗ, ବୃକ୍ଷ, ତୃଣ, ଲତା ଓ ଜନମାନଙ୍କ ମଧ୍ୟରେ ଅମା ଅନ୍ଧକାର ଘୋଟିଗଲା । ସର୍ବତ୍ର ନୀରବ, ନିସ୍ତବ୍ଧ ଓ ମି୍ରୟମାଣ । ସ୍ଥାନେ ସ୍ଥାନେ ନଗରରେ, ଗ୍ରାମରେ, ହାଟରେ, ବଜାରରେ ଏପରିକି କୁଟୀରବାସୀଠାରୁ ଆରମ୍ଭ କରି ସୌଧବାସୀ ପର୍ଯ୍ୟନ୍ତ ସମସ୍ତଙ୍କ ହୃଦୟରେ ଶୋକର ଘ୍ରସ୍ତା ଖେଳିଗଲା ।

ଗୁରୁଙ୍କ ବିୟୋଗରେ ଶିଷ୍ୟମାନଙ୍କୁ ସବୁ ଶୂନ୍ୟ ବୋଧ ହେଲା । ଏଣେ ମଧ୍ୟ ସାଧୁଙ୍କ ଦ୍ୱାରା ଅନୁଷ୍ଠିତ ଅକ୍ଷୟ ତୃତୀୟା ଯଜ୍ଞ ୧୨ ଦିନ ମାତ୍ର ଥିଲା । ଏହି ସମସ୍ତର ଆୟୋଜନ ନିମନ୍ତେ ଯେଉଁ ଶିଷ୍ୟମାନେ ଆଶ୍ରମରେ ଥିଲେ, ସେମାନେ ଚାରିଆଡ଼କୁ ଖବର ପଠାଇଲେ । ଚତୁର୍ଦ୍ଦିଗରେ ସାଧୁଙ୍କର ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ ପ୍ରଭୃତି ଶିଷ୍ୟଗଣ ଓ ଜନସାଧାରଣ ସମୁଦ୍ର ତେହଜ ସଦୃଶ ଭାର ସମ୍ଭାର ଓ ଯଜ୍ଞ ସାମଗ୍ରୀମାନ ସଙ୍ଗରେ ଘେନି ଦଳ ଦଳ ହୋଇ ଆସି ଆଶ୍ରମଠାରେ ରୁଣ୍ଡ ହେଲେ । ସାଧୁଙ୍କ ବିୟୋଗରେ ଶୋକାକୁଳ ହୋଇ କିଛିତ ସମୟ ନିମନ୍ତେ ଯେ ଯେଉଁଠାରେ ଥିଲେ ସେ ସେହିଠାରେ ବସିପଡ଼ିଲେ । ଯେପରି ଜଣାପଡ଼ୁଥିଲା, ସମସ୍ତେ କିଂକର୍ତ୍ତବ୍ୟବିମୂଢ଼ ହୋଇଅଛନ୍ତି । କେତେକ ସମୟ ପରେ ସାମାନ୍ୟ ଆଶ୍ୱସ୍ତ ହୋଇ ଗୁରୁଙ୍କ ସମାଧି ସମୀପକୁ ଯାଇ ଠିଆ ହେଲେ ଓ ପରମ ପିତାଙ୍କ ନିକଟରେ ସାଧୁଙ୍କର ଅମର ଆତ୍ମାର ପରମାତ୍ମାଙ୍କ ସହ ମିଳନ ନିମନ୍ତେ ପ୍ରାର୍ଥନା କଲେ ଓ ଆଶୀର୍ବାଦ ଭିକ୍ଷା କରି ସାଷ୍ଟାଙ୍ଗ ପ୍ରଣିପାତ କଲେ ।

ସାଧୁଙ୍କ ଦ୍ୱାରା ସ୍ଥାପିତ ଅକ୍ଷୟ ତୃତୀୟା ଯଜ୍ଞ ବା କୁମ୍ଭାବର ମହାଯଜ୍ଞର କାର୍ଯ୍ୟରେ ସମସ୍ତେ ମିଳିମିଶି ସାତଦିନ କାଳ ଅହୋରାତ୍ର

Digitized by PPRACHIN, SOA

ଲାଗି ପଡ଼ିଲେ । ଯଜ୍ଞ କାର୍ଯ୍ୟରେ ଲାଗିଥିବାବେଳେ ଅନେକ ଶିଷ୍ୟ ଓ ଜନସାଧାରଣଙ୍କ ମନରେ ଗୋଟିଏ ଭାବ ଖେଳୁଥାଏ ଯେ ଗୁରୁଙ୍କ ସ୍ମୃତି କି ପ୍ରକାର ରଖାଯିବ ଓ କପରି ସମାଧିର ପୂଜା ଆଦର ବ୍ୟବସ୍ଥା କରାଯିବ । ଏହା ଆମ୍ଭମାନଙ୍କର କର୍ତ୍ତବ୍ୟ ।

ଏହିପରି ନାନାପ୍ରକାର ଆଲୋଚନା ଚାଲିଥାଏ ଏବଂ ଯଜ୍ଞ ମଧ୍ୟ ଖୁବ ମୃତାବକ ହେଉଥାଏ । ଯଜ୍ଞରେ ପୂର୍ଣ୍ଣାହୁତି ଦେବାପରେ ଶିଷ୍ୟମାନେ ଗୁରୁଙ୍କ ସ୍ମୃତି ରକ୍ଷା ନିମନ୍ତେ ଗୋଟିଏ ସଭା କଲେ । ସଭାରେ କୌଣସି ପ୍ରକାର ସ୍ଥିର ସିଦ୍ଧାନ୍ତରେ ଉପନୀତ ନ ହୋଇ ନାନା ଗୋଳମାଳରେ ପଡ଼ିଲେ । ଠିକ୍ ଏହିପରି ଅବସ୍ଥାରେ ସାଧୁଙ୍କ ଭୌତିକ ଆତ୍ମା ଜଣେ ଶିଷ୍ୟ ଉପରେ ଆବିର୍ଭାବ ହୋଇ କହିଲେ-- "ତୁମ୍ଭେମାନେ ମୋ ସ୍ମୃତି ପାଇଁ ଚିନ୍ତା କରନାହିଁ । ମୁଁ ମୋ କାର୍ଯ୍ୟ କରାଇ ନେବି, ତୁମ୍ଭେମାନେ କେବଳ ଉଦ୍‌ଯୋକ୍ତା ହୋଇ ଉଦ୍‌ଯୋଗ କର ।"

ଏପରି ଆଦେଶର କେତୁଦିନ ପରେ ଯେଉଁ ଶିଷ୍ୟ ଉପରେ ସାଧୁ ଆବିର୍ଭାବ ହୋଇଥିଲେ, ସେହି ଶିଷ୍ୟ ୫୦୦୦ ରୌପ୍ୟ ମୁଦ୍ରା ସଂଗ୍ରହ କରି ସମାଧି ସ୍ଥଳରେ ପହଞ୍ଚିଲେ । ସମାଧିର ପୂଜା ଆଦି କରିବା ନିମନ୍ତେ ଯେଉଁ ସେବକଟି ଥିଲା, ସେ ତାହାଙ୍କୁ କହିଲା— "ମୋତେ ସାଧୁ ସ୍ୱପ୍ନାଦେଶ କରିଛନ୍ତି ଯେ, ସମାଧି ମନ୍ଦିରଟିକୁ ପଞ୍ଚମୁଖୀ କରିବ । ତାହା ସଙ୍ଗେ ବାଇଶି ପାହାଚ, ଜଳଚା କୁଣ୍ଡ, ପାକଶାଳା, ଗୋଷଘର, ଦୋଳବେଦୀ ଓ ସଭାମଣ୍ଡପାଦି ପ୍ରସ୍ତରରେ ପ୍ରସ୍ତୁତ କରିବ ଓ ଅକ୍ଷୟ ତୃଷ୍ଣାଘ୍ନ ଯଜ୍ଞ ବା କୁମ୍ଭାବର ମହାଯଜ୍ଞ ଯାହାକି ମୁଁ ଜଗତର ମଙ୍ଗଳ ନିମନ୍ତେ କରୁଥିଲି, ତାହାକୁ ବାର ବାର ଉକ୍ଷାକରି ସାତଦିନ କାଳ ଯଜ୍ଞ ନ କରି ଏକଦିନ ମାତ୍ର ଅକ୍ଷୟ ତୃଷ୍ଣାଘ୍ନ ଦିନଟି ଯଜ୍ଞ କରିବ ।"

ତଦନୁସାରେ ଶିଷ୍ୟମାନଙ୍କ ଉଦ୍‌ଯୋଗରେ, ସେବକର ତତ୍ତ୍ୱାବଧାନରେ ସମସ୍ତ କାର୍ଯ୍ୟ କରାଗଲା ଓ ପରବର୍ଷ ଶିଷ୍ୟମାନେ ସାଧୁଙ୍କର ଆଦ୍ୟ ବାର୍ଷିକ ଶ୍ରାଦ୍ଧୋତ୍ସବ ବୈଶାଖ କୃଷ୍ଣ ସପ୍ତମୀ ଦିନ ଅର୍ଥାତ୍ ଚୈତ୍ର ପୂର୍ଣ୍ଣିମା ଯିବାର ସାତଦିନରେ ଗୁରୁଙ୍କ ସ୍ମରଣାର୍ଥେ

Digitized by PPRACHIN, SOA

ଗୋଟିଏ ଯଜ୍ଞ କଲେ, ଯାହାକୁ କି ଲୋକେ ବର୍ତ୍ତମାନ ବଡ଼ ଯଜ୍ଞ ବୋଲି କହୁ ଅଛନ୍ତି । ତାହା ଆଜକୁ ୧୧୦ ବର୍ଷ ହେବ ନିୟମିତରୂପେ ହେଉଅଛି ଓ ଅକ୍ଷୟ ତୃତୀୟା ଦିନ କୁଞ୍ଜବିହାରୀ ମହାଯଜ୍ଞ ମଧ୍ୟ ହେଉଅଛି ଓ ଭବିଷ୍ୟତରେ ମଧ୍ୟ ହେଉଥିବ ।

ଧନ୍ୟ ମହାତ୍ମା ସୁନ୍ଦର ! ସାଧୁ ସୁନ୍ଦର ! ତୁମେ ଚିର ସୁନ୍ଦର ! ତୁମ୍ଭର ନାମକୁ ଓ ଜନ୍ମକୁ ଆପଣାର ତପସ୍ୟା ବଳରେ ସୁନ୍ଦର କରିପାରିଛ ଏବଂ ଅମର ଖ୍ୟାତି ଲଭିଅଛ । ତୁମ୍ଭର ଯଶ କୀର୍ତ୍ତି ସୁନ୍ଦର ଭାବେ ସ୍ୱର୍ଗଲୋକରେ ଓ ମର୍ତ୍ତ୍ୟର ଜଗତରେ ଅମରାକ୍ଷରରେ ବିରାଜୁଛି । ପ୍ରକୃତ ଧର୍ମ ଓ ସତ୍ୟପଥକୁ ସୁନ୍ଦର ରୂପେ ଦେଖାଇ ଦେଇଛ । ଉଚ୍ଚକୋଟିର ମାନବର ଆଦର୍ଶ ଦେଶ ଆଖିରେ ଆଙ୍କି ଦେଇଛ । ଧରାକୁ ସ୍ୱର୍ଗରେ ପରିଣତ କରିଛ । ଧନ୍ୟ ତୁମ୍ଭର ପରଶ, ଧନ୍ୟ ତୁମ୍ଭର ଶକ୍ତି, ଧନ୍ୟ ତୁମ୍ଭର ମହିମା, ଧନ୍ୟ ତୁମର ସାଧନା, ଧନ୍ୟ ତୁମ୍ଭର ଦେଶ ଓ ଦେଶସେବା । ଆଶୀର୍ବାଦ କର । ଦେଶଟା ତୁମ୍ଭରି କଲ୍ୟାଣରେ ସତ୍ୟ ଧର୍ମପଥରେ ଅଗ୍ରଣୀ ହେଉ । ରାମ ରାଜ୍ୟର ସୁଖ ଶାନ୍ତି ଭୋଗକରୁ । ପାପ, ତାପ ଭେଦଭାବ ସବୁ ମିଳାଇ ଯାଉ । ଜନଗଣ ସୁନ୍ଦର ଗୁଣରେ ଭୂଷିତ ହୋଇ ସୁନ୍ଦର ରୂପ ଧାରଣ କରନ୍ତୁ । ଅଭାବ ଦୂରୀଯାଉ । ଅସୁନ୍ଦର, ଅନ୍ଧାର ଓ ଅନାର୍ଯ୍ୟ ଭାବ ସବୁ ତୁମରି ଦିବ୍ୟାଲୋକରେ ଧ୍ୱଂସ ହେଉ । ଧରଣୀ ରାଣୀ ଶସ୍ୟ ଶ୍ୟାମଳ ରୂପ ଧାରଣ କରି ସହସ୍ର ଗୁଣରେ ଶସ୍ୟ ଉତ୍ପାଦନ କରୁ । ଋତୁଗଣ ଯଥା ନିୟମରେ ଗତି କରନ୍ତୁ । ଗ୍ରହ, ନକ୍ଷତ୍ରବୃନ୍ଦ ସେମାନଙ୍କର ପବିତ୍ର ଉଜ୍ଜ୍ୱଳ କିରଣରାଶି ପୃଥିବୀ ପରେ ବିଛାଇ ଦେଇ ଜନମାନଙ୍କୁ ସୁଖୀ କରନ୍ତୁ । ସ୍ଥାବର, ଜଙ୍ଗମ, ସର୍ବତ୍ର ପବିତ୍ର ଆନନ୍ଦ କୋଳାହଳରେ ପରିପୂର୍ଣ୍ଣ ହେଉ, ସ୍ୱାଧୀନ ଭାରତ, ସୁନ୍ଦର ରୂପ, ସୁନ୍ଦର ଶ୍ରୀ, ସୁନ୍ଦର ତେଜ ବୀର୍ଯ୍ୟରେ ବଳୀୟାନ ହେଉ । ଜଗତର ସବୁ କ୍ଷେତ୍ରରେ ଉନ୍ନତ ଭାବ ରାଜରେ ଭ୍ରମଣ କରି ତୁମ୍ଭରି ଏକ-ଈଶ୍ୱରବାଦ, ସୁନ୍ଦର ସତ୍ୟ ମନ୍ତ୍ରଟିକୁ ପ୍ରତିପାଦନ କରୁ, ଏହା ହିଁ ପ୍ରାର୍ଥନା ।

Digitized by PPRACHIN, SOA

# ସାଧୁ ସୁନ୍ଦରଙ୍କ ଅମର ଆତ୍ମାର ଆହ୍ୱାନ

ଆଜକୁ ପ୍ରାୟ ୪୦ ବର୍ଷ ତଳେ ସମଗ୍ର ପୃଥିବୀ ବାପ୍ଟିଷ୍ଟ ମିସିନେରୀ ସମାଜର ସଭାପତି ରେଭରେଣ୍ଡ ମାକ୍ ଆଲ୍‌ପୀନ, ଏମ୍. ଏ. ଡି. ଡି., ଏଲ୍. ଏଲ୍. ଡିଙ୍କ ସଭାପତିତ୍ୱରେ କଟକ ବାପ୍ଟିଷ୍ଟ ମିସନ ଗୀର୍ଜାରେ ଯେଉଁ ବାର୍ଷିକ ଉତ୍ସବ ନବବର୍ଷ ଦିନ ହୋଇଥିଲା, ସେଥିରେ ପ୍ରାୟ ୫୦୦୦ ନରନାରୀ ଓ ବଳିତର ବଡ଼ ବଡ଼ ସାହେବ-ମାନେ ଉପସ୍ଥିତ ଥିଲେ । ପ୍ରଥମେ ସଭାର ଉଦ୍‌ବୋଧନରେ ସ୍ଥାନୀୟ ମିସିନେରୀ ରେଭରେଣ୍ଡ ଜାକେଶ ପାଣ୍ଡ ଉଦ୍‌ବୋଧନ ବକ୍ତୃତାର ଆରମ୍ଭରେ ସେ କୁଞ୍ଜବର ମଠର ସୁନ୍ଦର ଦାବାଜୀଙ୍କର ଅମର ଆତ୍ମାକୁ ସ୍ମରଣ କରି କହିଥିଲେ—"ଆଜ ମୁଁ ଏହି ବିରାଟ ଖ୍ରୀଷ୍ଟୀୟ ମଣ୍ଡଳୀ ସମ୍ମୁଖରେ ସମସ୍ତ ଉତ୍କଳୀୟ ଭାଇ ଭଉଣୀମାନଙ୍କୁ ବିଶେଷ ଭାବେ ଜଣାଇଦେବାକୁ ଚାହେଁ ଯେ, ଏହି ପୁଣ୍ୟ ଉତ୍କଳ ଭୂମିରେ ଖ୍ରୀଷ୍ଟଧର୍ମର ଆଲୋକ ବା ତତ୍ତ୍ୱ ପ୍ରକାଶ ପୂର୍ବରୁ ସେ ତାଙ୍କର ଶିଷ୍ୟଗଣଙ୍କୁ ଅର୍ଥାତ୍ ଅ-ଖ୍ରୀଷ୍ଟାନମାନଙ୍କୁ ତାଙ୍କ ବୈଦାନ୍ତିକ ବିଦ୍ୟାଳୟରେ ଅନ୍ୟାନ୍ୟ ଧର୍ମ ତତ୍ତ୍ୱ ସଙ୍ଗେ ଖ୍ରୀଷ୍ଟ ତତ୍ତ୍ୱ ମଧ ଶିକ୍ଷା ଦେଇଥିଲେ । ଅତଏବ ଆମ୍ଭେ ସମସ୍ତ ଓଡ଼ିଶା ଖ୍ରୀଷ୍ଟୀୟ ମଣ୍ଡଳୀ ସଭାର ଆରମ୍ଭରୁ ସାଧୁ ସୁନ୍ଦର ଦାସଙ୍କୁ ସ୍ମରଣ କରି ତାହାଙ୍କଠାରେ କୃତଜ୍ଞତା ପ୍ରକାଶ କରିବା ଆମ୍ଭମାନଙ୍କର ସର୍ବାଦୌ କର୍ତ୍ତବ୍ୟ ।"

ଏଥିରୁ ସ୍ପଷ୍ଟ ଜଣାପଡ଼ୁଛି ଯେ, ଖ୍ରୀଷ୍ଟିୟ ମଣ୍ଡଳୀରେ ସାଧୁଙ୍କ ସ୍ଥାନ କେତେ ଉଚ୍ଚରେ । ଏହି ବିଷୟ ସାଧୁ ସୁନ୍ଦର ଦାସଙ୍କ ଜୀବନୀର ସଂଗ୍ରାହକ ଶ୍ରୀ ପ୍ରମଥନାଥ ବସୁ ମହୋଦୟ, ଯେ କି ଅମୃତ ବଜାର ପତ୍ରିକା ଓ 'ଦି ବେଙ୍ଗଲି' ପତ୍ରିକାର ବିଶେଷ ପ୍ରତିନିଧି ରୂପେ ସ୍ୱୟଂ ସଭାରେ ଉପସ୍ଥିତ ଥାଇ ଏହି ଘଟଣାଟିକୁ ସାଧୁଙ୍କ ଜୀବନୀରେ ସ୍ଥାନ ଦେଇଅଛନ୍ତି । ସ୍ୱର୍ଗୀୟ ରେଭରେଣ୍ଡ ସେ-ମ ସାହୁ ବୃଦ୍ଧ ମିସିନେରୀ ମହୋଦୟ ସଭାପତିଙ୍କ ବକ୍ତୃତାକୁ ଓଡ଼ିଆରେ ଅନୁବାଦ କରି ବୁଝାଇଥିଲେ ।

※

Digitized by PPRACHIN, SOA

# ସାଧୁ ସୁନ୍ଦର ଓ ଗଙ୍ଗାଧର

ଗଙ୍ଗାଧର ଷଡ଼ଙ୍ଗୀ ସାଧୁଙ୍କ ଶିଷ୍ୟମାନଙ୍କ ମଧ୍ୟରେ ଜଣେ ଉଚ୍ଚ ଦରର ଶିକ୍ଷିତ ବ୍ରାହ୍ମଣ ଶିଷ୍ୟ ଥିଲେ । ଏ ମହାଶୟ ଓ ରାମଚନ୍ଦ୍ରଜୀ ଯାଚକ ଦୁଇଜଣ କୁଜାବର ପତ୍ରର ସହକାରୀ ସମ୍ପାଦକ ଥିଲେ । ଗଙ୍ଗାଧର ଟାଙ୍ଗି, କପିଳାସ ରେଡ଼ ନିକଟବର୍ତ୍ତୀ କୁଜାବରଠାରୁ ତିନି ମାଇଲ ଦୂରରେ ଥିବା ଏକ ବ୍ରାହ୍ମଣ ଶାସନରେ ଜନ୍ମ ଗ୍ରହଣ କରିଥିଲେ । ସାଧୁଙ୍କର କୁଜାବର ଆଶ୍ରମରେ ଶିଷ୍ୟ ଭଳି ରହି ବୈଦାନ୍ତିକ ବିଦ୍ୟାଳୟରେ ବ୍ରହ୍ମଜ୍ଞାନ, ସ୍ୱରଧର, ବେଦ, ଜ୍ୟୋତିଷ, ବ୍ୟାକରଣ, ଧନୁର୍ବାଣ, ବୈଦ୍ୟ, କୃଷି, ବାଣିଜ୍ୟ, ନାନାପ୍ରକାର ବାହନ ଚାଳନ, ନଟ ବୃତ୍ତି, ସମ୍ମୋଧନ ଚିକିତ୍ସା ଓ ଧର୍ମ ଶିକ୍ଷା କରି ଗୁରୁ ଉପଯୁକ୍ତ ହୋଇ ନାନା ଦେଶ ବିଦେଶକୁ ଧର୍ମ ପ୍ରଚାର କରିବାକୁ ଯାଉଥିଲେ । ଏହାଙ୍କ ସଙ୍ଗରେ ରାମଚନ୍ଦ୍ର, ଦୈତାରି, ବାମଦେବ, ଗଙ୍ଗା ମହାନ୍ତି, ଜଗନ୍ନାଥ ପଟ୍ଟନାୟକ, ଗଙ୍ଗାଧର ଢଶ୍ୱାଳ, କୃପାସିନ୍ଧୁ ସାହୁ, ରାଧୁ ଦାସ, ସୁଦର୍ଶନ ରାଉତ, ରାମକୃଷ୍ଣ ଦାସ ଓ ପରମେଶ୍ୱର ମଲ୍ଲ ପ୍ରଭୃତି ପ୍ରଚାର କାର୍ଯ୍ୟ କରୁଥିଲେ ।

ଗଙ୍ଗାଧରଙ୍କର ସଙ୍ଗୀତ ବିଦ୍ୟା ଓ ନାନା ଭାଷାର ଜ୍ଞାନ ଥିଲା । ଏ ମହାଶୟ ୧୮୬୮ ସାଲରେ ପ୍ରଥମେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହେଲେ ଓ ଓଡ଼ିଶାର ଖ୍ରୀଷ୍ଟୀୟ ମଣ୍ଡଳୀର ପ୍ରଥମ ପ୍ରଚାରକ ହୋଇ ଅନେକଙ୍କୁ ଖ୍ରୀଷ୍ଟଧର୍ମରେ ଆକୃଷ୍ଟ କରିଥିଲେ । ଏହାଙ୍କର ଖ୍ରୀଷ୍ଟଧର୍ମ ଗ୍ରହଣ ସମ୍ବନ୍ଧରେ ଅନେକ ପ୍ରବାଦ ଅଛି । କେତେକ କହନ୍ତି—ଏ ମହାଶୟ ସାଧୁଙ୍କ ଆଦେଶରେ ପ୍ରଥମେ ଖ୍ରୀଷ୍ଟାନ ହୋଇ ମହାନଦୀରେ ସର୍ବ ସମ୍ମୁଖରେ ଲେସି ସାହେବଙ୍କ ଦ୍ୱାରା ଡୁବନ ହୋଇଥିଲେ । ଆଉ ମଧ୍ୟ କେତେକ କହନ୍ତି, ସେ ସ୍ୱଇଚ୍ଛାରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ସେ ଯାହା ହେଉନା କାହିଁକି ଖ୍ରୀଷ୍ଟାନ ହୋଇ ମଧ୍ୟ ଗଙ୍ଗାଧର ସାଧୁଙ୍କୁ ବରାବର ଗୁରୁ ରୂପେ ଦେଖୁଥିଲେ, କାରଣ ଗୁରୁଙ୍କଠାରୁ ସେ ଖ୍ରୀଷ୍ଟଧର୍ମର ତତ୍ତ୍ୱ ପାଇଥିଲେ ।

Digitized by PPRACHIN, SOA

ଏକଦା ମେ ଲେସି ସାହେବଙ୍କୁ ସାଧୁ ସୁନ୍ଦରଙ୍କ ବିଷୟ କହିଥିଲେ ଓ ଲେସି ସାହେବ ଗଙ୍ଗାଧରଙ୍କ ଗୁରୁଙ୍କ ପ୍ରତି ଯେ ଭାବ ଜାଗିଥିଲା, ସେହି ବିଷୟ ଲଣ୍ଡନ ମିସିନେରୀ ରିପୋର୍ଟରେ ଲେଖିଛନ୍ତି -

"I remember well on one occasion of Gunga's visiting me, that he said in reference to Sundar Das, assuming the character of Christ."

ଏଥିରୁ ଯଥେଷ୍ଟ ପ୍ରମାଣ ମିଳୁଛି ଯେ, ଗଙ୍ଗାଧର ସାଧୁଙ୍କଠାରେ ତାଙ୍କର ଶେଷ ସମୟ ପର୍ଯ୍ୟନ୍ତ ଅଟଳ ବିଶ୍ୱାସ ରଖି ୧୮୭୭ ସାଲରୁ ଏହି ମରଭୂମିରୁ ଚିର ବିଦାୟ ନେଲେ । ଏ ଜଣେ ସ୍ପଷ୍ଟ ଜାତୀୟ-ବାଦୀ ଓ ସ୍ୱାଧୀନଚେତା ପୁରୁଷ ଥିଲେ । ଏହାଙ୍କ ଦ୍ୱାରା ସବୁ ପ୍ରଥମ ଆମେରିକା ଖ୍ରୀଷ୍ଟିୟ ମଣ୍ଡଳୀକୁ ପତ୍ର ଦିଆ ହୋଇଥିଲା । ତହିଁରେ ସେ ଦାବୀ କରିଥିଲେ ଯେ ଆମେରିକାର ଖ୍ରୀଷ୍ଟାନମାନେ ଯେପରି ସ୍ୱାଧୀନ ଜୀବନ ଯାପନ କରୁଅଛନ୍ତି, ସେହିପରି ଭାରତୀୟ ଖ୍ରୀଷ୍ଟାନମାନଙ୍କୁ ସମସ୍ତ ପ୍ରକାର ସୁବିଧା ଦିଆଯାଉ ।

ଏହି ବ୍ରାହ୍ମଣ-ହିନ୍ଦୁ-ଖ୍ରୀଷ୍ଟାନଙ୍କ ଠାରୁ ଅନ୍ୟାନ୍ୟ ଖ୍ରୀଷ୍ଟ ଭାଇ-ମାନେ ଉତ୍ପନ୍ନ ହୋଇ ଅଛନ୍ତି, ସେଥିପାଇଁ ବର୍ତ୍ତମାନ ଉତ୍କଳର ପୁରୀ ପଲ୍ଲୀରେ ଯେଉଁ ଖ୍ରୀଷ୍ଟାନ ଭାଇ ଓ ଭଉଣୀମାନେ ଅଛନ୍ତି, ସେମାନଙ୍କର ହିନ୍ଦୁ ଭାଇ ଓ ଭଉଣୀମାନଙ୍କ ସହିତ ଗର୍ବ ଅନୁଭବ କରିବା ଆବଶ୍ୟକ ଯେ ସେମାନଙ୍କର ପୂର୍ବ ପୁରୁଷ ଏହି ସାଧୁ ଓ ତାଙ୍କର ଶିଷ୍ୟ ଗଙ୍ଗାଧର ଷଡ଼ଙ୍ଗୀଙ୍କ ଠାରୁ ଜନ୍ମି ଅଛନ୍ତି, ଅର୍ଥାତ୍ ଗଙ୍ଗାଧର ଷଡ଼ଙ୍ଗୀ ଏହି ହିନ୍ଦୁ-ଖ୍ରୀଷ୍ଟାନ ମାନଙ୍କର ଅଗ୍ରଣୀ ଓ ପଥ ପ୍ରଦର୍ଶକ ଅଟନ୍ତି ।

Digitized by PPRACHIN, SOA

## ବାବାଜୀ ବନ ବଣ୍ୱାଲ ଓରଫ ଭଗବାନ ଦାସ

ଏ ମହାତ୍ମା ୧୮୪୩ ମସିହାରେ କୁଞ୍ଜବର ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଜାତିରେ କ୍ଷତ୍ରିୟ ଥିଲେ । ପିଲାଦିନରୁ ତାଙ୍କର ମନ ଭକ୍ତି ଆଡ଼କୁ ଗତି କରୁଥିଲା । ସେ ସଂସାର କରି ସଂସାର ପ୍ରତି ତାଙ୍କର ବିରାଗ ଭାବ ଆସିବାରୁ ସାଧୁ ସୁନ୍ଦରଙ୍କ ସମାଧି ମନ୍ଦିରର ସେବକ ରୂପେ ରହି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସାଧୁଙ୍କ ସମାଧିର ପୂଜା ପାଠ ଆଦି କାର୍ଯ୍ୟ କରୁଥିଲେ । ସେ ତାଙ୍କ ବାପାଙ୍କଠାରୁ ସାଧୁଙ୍କ ସମ୍ବନ୍ଧରେ ଅନେକ କଥା ଶୁଣିଥିଲେ ଓ ଆମ୍ଭମାନଙ୍କୁ ସାଧୁଙ୍କ ବିଷୟରେ ଅନେକ ସାରକଥା କହି ଅଛନ୍ତି । ତାହାଙ୍କର ଏପରି ଶକ୍ତି ଥିଲା ଯେ ସେ ମରିବା ପର୍ଯ୍ୟନ୍ତ ସମାଧି ମନ୍ଦିରଠାରୁ ଦୁଇଘଣ୍ଟା ପଦବ୍ରଜରେ ଚାଲି ଆସି କଟକ ବକ୍‌ସିବଜାରରେ ପହଞ୍ଚୁଥିଲେ ।

ଏହାଙ୍କ ଗୁଣ ମଧ୍ୟରେ ଗୋଟିଏ ବିଶେଷ ଗୁଣ, ଯାହାକି ତାହାଙ୍କଠାରେ ସର୍ବଦା ଦେଖାଯାଉଥିଲା, ତାହା ହେଉଛି ସେ ଭୋକ, ଶୋଷିଙ୍କ ପାଇଁ ଖାଦ୍ୟ ସଞ୍ଚୟ କରି ରଖୁଥିଲେ ଓ ଠିକ୍ ବେଳରେ ତାହା ଦେଉଥିଲେ । ମୃତ୍ୟୁ ସମୟକୁ ତାହାଙ୍କର ବୟସ ୧୦୪ ବର୍ଷ ହୋଇଥିଲା । ସେ ଏହି ଇହ ଜଗତରୁ ୧୩ । ୬ । ୧୯୪୭ ତାରିଖ ଦିନ ୧୦ ଘଣ୍ଟା ସମୟରେ ଚିର ବିଦାୟ ନେଇ ଅଛନ୍ତି । ତାହାଙ୍କୁ ମଠ ନିକଟବର୍ତ୍ତୀ ସ୍ଥାନରେ ସମାଧି ଦିଆଯାଇଛି । ✳



---

✳ ବନ ବଣ୍ୱାଲ ବା ବିନୋଦ ବଣ୍ୱାଲଙ୍କ ବଂଶଧର ବର୍ତ୍ତମାନ କୁଞ୍ଜବର ଗ୍ରାମରେ ବାସକରୁଛନ୍ତି । ସେମାନେ ସାଧୁଙ୍କର ଶିଷ୍ୟଭାବରେ ମଠ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ ଅଟନ୍ତି ।—ସଂ.

Digitized by PPRACHIN, SOA

# ମହାମନୀଷୀ ସାଧୁସୁନ୍ଦର

ଲକ୍ଷ୍ମୀନାରାୟଣ ସାହୁ

ସାଧୁ ସୁନ୍ଦର ଦାସଙ୍କ ଜୀବନୀ ଆଲୋଚନା କରିବା ମହା ପୁଣ୍ୟ ଅର୍ଜନ କରିବା କଥା । ସାଧୁ ସୁନ୍ଦର ଦାସ ଓଡ଼ିଶାରେ ଗୋଟିଏ ତେଜସ୍କର ମହାପୁରୁଷ ଥିଲେ । ଏପରି "ତେଜସ୍ୱୀ ମହାପୁରୁଷ ମୁଁ କେବଳ ଦୟାନନ୍ଦ ସରସ୍ୱତୀଙ୍କ ଜୀବନରେ କିଛି ପାଏ; କିନ୍ତୁ ସାଧୁ ସୁନ୍ଦର ଦାସଙ୍କ ଜୀବନୀ ଆହୁରି ତେଜସ୍କର, ଆହୁରି ଆଶ୍ଚର୍ଯ୍ୟଜନକ । ସେ ଯୋଗୀ, ତପସ୍ୱୀ, ସାଧକ, କର୍ମବୀର ଥିଲେ । ଯେପରି ସ୍ୱାମୀ ଦୟାନନ୍ଦ କାହାକୁ ଭୟ ନ କରି ଗୋଟିଏ ରାଜାଙ୍କୁ କହିଥିଲେ, "କ'ଣ ଡର ଦେଖାଉଛ ? ମୋତେ ବନ୍ଦୀ କରି ଜାଣିବ କହୁଛ, ଜାଣ । ମୋର ହାତଗୋଡ଼ରେ ୨୦ଟି ବନ୍ଧ ଅଛି । ସିଂହ ଘରେ କୁକୁରର ଜନ୍ମ ନେଇନ୍ତୁ"—ଏହି କଥା କହିଥିଲେ । ସ୍ୱାମୀ ଦୟାନନ୍ଦଙ୍କୁ ୨୦ଥର ବିଷ ପାନ କରାଇଥିଲେ ଏବଂ ସେହି ବିଷ ଦ୍ୱାରା ତାଙ୍କ ଜୀବନ ନଷ୍ଟ ହୋଇଥିଲା ।

ସାଧୁ ସୁନ୍ଦର ଦାସଙ୍କୁ ସେହିପରି ଜେଲରେ ପୁରାଇବା, କଷ୍ଟ ଦେବା, କର୍ତ୍ତାମାନେ ସବୁ କରିଥିଲେ; କିନ୍ତୁ ସାଧୁ କିଛି ଭ୍ରୂକ୍ଷେପ କରି ନଥିଲେ । ସେ ଥିଲେ ପ୍ରକୃତରେ ଯୋଗୀ, ସିଦ୍ଧ ପୁରୁଷ, ମହା ମନୀଷୀ । ଏହାଙ୍କର ଜୀବନୀ ଯେତେ ଆଲୋଚନା କରିବୁ, ଆମେ ଓଡ଼ିଶାରେ ସେତେ ପ୍ରେରଣା ପାଇ ପାରିବୁ । ଯୋଦ୍ଧା, ବୀର, ସାଧୁ, ସୁନ୍ଦର, ତେଜସ୍ୱୀ, ମନସ୍ୱୀ, ଯୋଗୀ, ସିଦ୍ଧ ଥିଲେ ସାଧୁ ସୁନ୍ଦର ଦାସ ।

ମୋର ଚିତ୍ତ ତାଙ୍କ ପାଦରେ ସନ୍ନିବିଷ୍ଟ । ମୁଁ ତାଙ୍କର ତେଜସ୍ୱୀ ରୂପ ଦେଖି ମୁଗ୍ଧ, ତାଙ୍କର ଗୁଣ ଶୁଣି ମୁଗ୍ଧ । ସେ ଓଡ଼ିଶାରେ ମହାମନୀଷୀ ଥିଲେ ଏବଂ ପୃଥିବୀର ଜଣେ ବିଶିଷ୍ଟ ମହାପୁରୁଷ ଥିଲେ । ଓଡ଼ିଆ ତାଙ୍କର ଚରିତ ଆଲୋଚନା କରି ବଳ ପାଉ ।

ଭାରତ ସେବକ ସମିତି, କଟକ

୨୦-୪-୪୮



Digitized by PPRACHIN, SOA

# ମହାତ୍ମା ସାଧୁସୁନ୍ଦର

ଶ୍ରୀ ପୂର୍ଣ୍ଣପରାକ୍ରମ କେଶରୀ ବର୍ମା

[୧୯୪୮ ମସିହାରେ ପ୍ରକାଶିତ ସ୍ୱର୍ଗତ କୃଷ୍ଣମୋହନ ସାହୁଙ୍କ ଦ୍ୱାରା ଲିଖିତ ସାଧୁ ସୁନ୍ଦର ଦାସଙ୍କ ଜୀବନୀ ପୁସ୍ତକର ଏହା ହେଉଛି ମୁଖବନ୍ଧ ।]

କଟକ ବକ୍‌ସିବଜାର ଶାନ୍ତି ଆଶ୍ରମ ନିବାସୀ ଶ୍ରୀ ପ୍ରମଥନାଥ ରାୟ ମହାଶୟ ବହୁ ଅଧ୍ୟବସାୟ ଗବେଷଣା ଦ୍ୱାରା ସାଧୁ ସୁନ୍ଦର ଦାସଙ୍କ ଜୀବନୀ ଆଲୋଚନା କରି ଓଡ଼ିଶା ତଥା ଭାରତର ଗଣ୍ୟମାନ୍ୟ ରାଜ-ମାନଙ୍କ ଓ ସମାଜ ସେବକଙ୍କ ସଙ୍ଗେ ଲଣ୍ଡନ ବାପ୍ଟିଷ୍ଟ ମିସନ ସମାଜର ସାଧାରଣ ସମ୍ପାଦକ ମି. ଇଭାଲସ୍ୱମସନ ଏମ୍. ଏ., ବି. ଡ଼ି. ଲିଟଙ୍କ ଦୃଷ୍ଟି ଆକର୍ଷଣ କରିଅଛନ୍ତି ଓ ସେମାନେ ମଧ୍ୟ ସାଧୁଙ୍କ ସମ୍ପୂର୍ଣ୍ଣ ଜୀବନୀ ପ୍ରକାଶ ନିମନ୍ତେ ବିଶେଷ ଆଗ୍ରହାନ୍ୱିତ ଓ ଅପେକ୍ଷାରେ ଥିବାର ଜଣାଇ ଅଛନ୍ତି ।

ବର୍ତ୍ତମାନ ଓଡ଼ିଶାର ପ୍ରଧାନମନ୍ତ୍ରୀ ମାନ୍ୟବର ଶ୍ରୀ ହରେକୃଷ୍ଣ ମହତାବ, ମାନ୍ୟବର ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ, କନିକା ଟିକାୟତ ସାହେବ ଶ୍ରୀ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ, ପଣ୍ଡିତ ନୀଳକଣ୍ଠ ଦାସ, ସମାଜ ପତ୍ରିକାର ସମ୍ପାଦକ ଶ୍ରୀ ରାଧାନାଥ ରଥ ଓ ମୟୂରଭଞ୍ଜ ମହାରାଜାଙ୍କ ରାଜମାତା, ଯେ କି ମହାତ୍ମା କେଶବଚନ୍ଦ୍ର ସେନଙ୍କ ଦୁହିତା ମହାରାଣୀ ଶ୍ରୀମତୀ ସୁଚାରୁ ଦେବୀ ପ୍ରମୁଖ ଅନ୍ୟାନ୍ୟ ଭଦ୍ର-ବ୍ୟକ୍ତିଗଣ ମହାତ୍ମାଙ୍କ ସମ୍ବନ୍ଧେ ବିଶେଷ ବିବରଣୀ ଜାଣିବାର ଇଚ୍ଛା ପ୍ରକାଶ କରିଅଛନ୍ତି ।

ବହୁବର୍ଷ କାଳ ଅନ୍ୱେଷଣ ହେବା ସତ୍ତ୍ୱେ ସାଧୁଙ୍କର ସମସ୍ତ ବିଷୟ ପୂର୍ଣ୍ଣମାତ୍ରାରେ ଜଣା ପଡ଼ିନାହିଁ । ଲୋକମୁଖରୁ କିମ୍ବଦନ୍ତୀ,

Digitized by PPRACHIN, SOA

ପ୍ରବାଦ ଓ କେତେକ ପୋଥିରୁ ଏବଂ ଖ୍ରୀଷ୍ଟ ମିସିନେରୀମାନଙ୍କ ରିପୋର୍ଟରୁ ଅନେକ ତଥ୍ୟ ସଂଗ୍ରହ ହୋଇଅଛି । ତାହାଙ୍କର ଭବିଷ୍ୟତ ବାକ୍ୟ ଅର୍ଥାତ୍ 'ମାଳିକା' ମିଳୁନାହିଁ । ଶୁଣାଯାଏ ଯେ, ବ୍ରିଟିଶ-ସରକାର ତାଙ୍କ ପୋଥିରୁ କେତେକ ଅଂଶ ଜବତ କରି ନେଇଥିଲେ ଓ ଆଜକୁ ପ୍ରାୟ ୩୦ ବର୍ଷ ପୂର୍ବେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ଭ୍ରାତୃଷ୍ପୁତ୍ର ଶ୍ରୀ ସିଦ୍ଧେନ୍ଦ୍ରନାଥ ଠାକୁର ଓଡ଼ିଶା ମହାପୁରୁଷମାନଙ୍କ ଗାଦି (ଦାସ ଭାଇମାନଙ୍କ ଗାଦି) ଅର୍ଥାତ୍ ନେମାଳ, ଛତିଆବଟ ପ୍ରଭୃତି ଗାଦିରୁ ବ୍ରହ୍ମ ସଂହିତା, ଶୂନ୍ୟ ସଂହିତା, ପଦ୍ମ କଳ୍ପ, ଗୁପ୍ତ ଗୀତା ଓ ମାଳିକା, ଯେଉଁଥିରେ ମହାପୁରୁଷମାନଙ୍କର ଭବିଷ୍ୟତ 'ବାଣୀ' ଓ ଅଲୌକିକ ମହିମା ପ୍ରକାଶ ପାଇଥିଲା, ସେହି ପୋଥି ସବୁ ଉଇ ଖାଇବା ସତ୍ତ୍ୱେ ସଂଗ୍ରହ କରି ସଙ୍ଗରେ ନେଇ ଯାଇଛନ୍ତି । ଏହି ପୋଥି ସବୁ ବା ଉକ୍ତ ସମୂହର ବିଷୟ ବଙ୍ଗଳାର "ଭାରତବର୍ଷ" ମାସିକ ପତ୍ରିକାରେ କିଛି କିଛି ଆଲୋଚନା ହୋଇଥିଲା । ଏହି ବିଷୟ ପ୍ରମଥବାବୁ ନିଜେ ପଢ଼ି ସାଧୁଙ୍କ ଜୀବନୀରେ ଅନ୍ତର୍ଭୁକ୍ତ କରିଅଛନ୍ତି ।

ଉତ୍କଳର ବ୍ୟାସକବି ସ୍ୱର୍ଗୀୟ ଫକୀରମୋହନ ସେନାପତି ମହୋଦୟ ବାଲିଆରାର ନିବାସୀ ସାଧୁଙ୍କର ଶିଷ୍ୟ ସ୍ୱର୍ଗତ ଶ୍ୟାମସୁନ୍ଦର ସାହୁ ଯେ କି ୯୩ ବର୍ଷ ବଞ୍ଚି ରହି ଆଜକୁ ପ୍ରାୟ ୯ ବର୍ଷ ହେବ ମରି-ଅଛନ୍ତି ଓ ଶ୍ୟାମସୁନ୍ଦରଙ୍କ ଅତି ବୃଦ୍ଧା ମାତା ଯେ କି ୧୧୨ ବର୍ଷ କାଳ ବଞ୍ଚି ରହିଥିଲେ, ତାହାଙ୍କଠାରୁ ସାଧୁଙ୍କ ସମ୍ବନ୍ଧରେ ଅନେକ ତଥ୍ୟ ଅନ୍ୱେଷଣ କରି କେବଳ ତାଙ୍କର "ଅବସର ବାସରେ" ହିନ୍ଦୀ ଭାଷାରୁ ସାଧୁ ସୁନ୍ଦରଙ୍କ ଅଦ୍ୱୈତବାଦ ସମ୍ବନ୍ଧେ ଓଡ଼ିଆରେ ତର୍ଜମା କରିଅଛନ୍ତି । ଏ ମଧ୍ୟ ସାଧୁଙ୍କର ଦ୍ୱୈତବାଦର ଆଲୋଚନା କରିଥିଲେ । ଦୁଃଖର କଥା ଯେ, ସେ ମରିଯିବାରୁ ତାହା ପ୍ରକାଶ ହୋଇ ପାରିଲା ନାହିଁ । ତାହାଙ୍କ ନିକଟରେ ଅନେକ ତଥ୍ୟ ରହି ଯାଇଅଛି ।

ଓଡ଼ିଶା ଖ୍ରୀଷ୍ଟିୟ ମଣ୍ଡଳୀ ଇତିହାସ ବହିରେ ୧୯୪୩ ମସିହାରେ ସାଧୁଙ୍କ ସମ୍ବନ୍ଧରେ ଓଡ଼ିଆରେ କେତେକ ଟୀପଣି ସାମାନ୍ୟ ଭାବେ ପ୍ରକାଶ ପାଇଅଛି । ଏହା ବ୍ୟତୀତ ସ୍ୱର୍ଗତ ଦେଓ୍ୱାନ ବାହାଦୁର

Digitized by PPRACHIN, SOA

ଶ୍ରୀକୃଷ୍ଣ ମହାପାତ୍ର ମହୋଦୟ ସାଧୁଙ୍କ ସମ୍ବନ୍ଧରେ କେତେକ ବିଷୟ ଧାରଣା କରିଥିଲେ ଓ ଅଳ୍ପକଥାରେ ମନ୍ତବ୍ୟ ପ୍ରକାଶ କରିଅଛନ୍ତି ।

ଉତ୍କଳ ବିଶ୍ୱବିଦ୍ୟାଳୟର ଦାର୍ଶନିକ ଅଧ୍ୟାପକ ଶ୍ରୀ ରତ୍ନାକର ପତି, ଏମ୍. ଏ. ମହୋଦୟ ସାଧୁଙ୍କର ଅଦ୍ୱୈତବାଦ ବିଷୟକୁ ଦାର୍ଶନିକ ଭାବେ ଆଲୋଚନା କରୁଅଛନ୍ତି । ଏହା ପରେ ପ୍ରକାଶ ପାଇବାର ଆଶା !

ଏହା ସମସ୍ତ ଘଟିବା ସତ୍ତ୍ୱେ ସାଧୁଙ୍କ ଶିଷ୍ୟ କୁଞ୍ଜବର ମଠର ଅବୈତନିକ ସମ୍ପାଦକ ଡାକ୍ତର କୃଷ୍ଣମୋହନ ସାହୁ ୧୯୩୪ ମସିହାଠାରୁ ସାଧୁଙ୍କ ଦ୍ୱାରା ସ୍ଥାପିତ ଅକ୍ଷୟ ତୃତୀୟା ସଙ୍କୀର୍ତ୍ତନ ପର୍ବର କର୍ମରେ ନିଜ ଭଣ୍ଡାରରୁ ଓ ଭିକ୍ଷା ଦ୍ୱାରା ଦେଶର ସମସ୍ତ ପ୍ରକାର ଧର୍ମାବଲମ୍ବୀମାନଙ୍କଠାରୁ ଅର୍ଥ ସଂଗ୍ରହ କରି ଓ ତତ୍‌ସଙ୍ଗେ ସାଧୁଙ୍କର ତଥ୍ୟ ଅନ୍ୱେଷଣରେ ଲିପ୍ତ ରହି କୃତକାର୍ଯ୍ୟ ହୋଇପାରି ନାହାନ୍ତି । ତଥାପି ସେ ଏଥିପୂର୍ବରୁ ଛଅଗୋଟି ପ୍ରକୃତ ପନ୍ଥ ଯାହାକି ପ୍ରମଥବାବୁ ଓ ଭାରତ ସେବକ ସମିତିର ସଭ୍ୟ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଇଂରାଜୀ ଭାଷାରେ ଗଦ୍ୟ ପଦ୍ୟ ଆକାରରେ ଲେଖିଥିଲେ, ସେଗୁଡ଼ିକୁ ସ୍ୱହସ୍ତରୁ ଗ୍ରନ୍ଥାଖର୍ଚ୍ଚ ଦେଇ ଛପାଇବା ସତ୍ତ୍ୱେ ତାଙ୍କର ମନ ଶାନ୍ତ ଲଭ କଲନାହିଁ । ତେଣୁ ସେ ତାଙ୍କର କର୍ମମୟ ଜୀବନର ଅବସରରେ ପ୍ରମଥବାବୁଙ୍କ ଇଂରାଜୀ ଲେଖା, ଖ୍ରୀଷ୍ଟାନ ମିସିନେରୀମାନଙ୍କ ରିପୋର୍ଟ ଓ ଲୋକମୁଖରୁ ଅନେକ ବିଷୟ ଓଡ଼ିଆରେ ଟୀପଣି କରି ଏହି କ୍ଷୁଦ୍ର ପୁସ୍ତିକାଟିକୁ ପ୍ରକାଶ କରୁଅଛନ୍ତି । ଏହା ଓଡ଼ିଶା ପକ୍ଷରେ ଗୋଟିଏ ଗୌରବର କଥା । ଏଥିପାଇଁ ସମସ୍ତ ଓଡ଼ିଆ ଭାଇ ଭଉଣୀ ଏ ମହାପୁରୁଷଙ୍କର ସର୍ବାଙ୍ଗ ସୁନ୍ଦର ଜୀବନୀ ପ୍ରକାଶ ପାଇବା ଦିଗରେ ଡାକ୍ତରବାବୁଙ୍କୁ ସାହାଯ୍ୟ ବାଞ୍ଛନୀୟ ।

ତା ୩୦-୪-୪୮
କାଳୀଗଳି, କଟକ



Digitized by PPRACHIN, SOA

# ମହାନ ସଂସ୍କାରକ
# ମହାତ୍ମା ସାଧୁ ସୁନ୍ଦର ଦାସ

(୧୭୨୦-୧୮୩୮)

ଶ୍ରୀ ପଠାଣି ପଟ୍ଟନାୟକ

## ପରାଧୀନ ଓଡ଼ିଶାର ଏକ ବିସ୍ମୟ

ସାଧୁ ସୁନ୍ଦର ଦାସଙ୍କ ଦୀର୍ଘ ଜୀବନକାଳ ଏକଶତ ଅଠର ବର୍ଷ । ସେ ଜନ୍ମଗ୍ରହଣ କଲାବେଳେ ଓଡ଼ିଶାରେ ମୁସଲମାନ ଶାସକମାନେ ରାଜତ୍ୱ କରୁଥିଲେ । ତାଙ୍କର ଜୀବନକାଳରେ ମରହଟ୍ଟାମାନଙ୍କର ପଚ୍ଚିଶବର୍ଷ ଶାସନକାଳ ଅତିବାହିତ ହୋଇଥିଲା । ପରିଶେଷରେ ସେ ଇଂରେଜ ରାଜତ୍ୱର ପଞ୍ଚତିରିଶ ବର୍ଷ ଉପଭୋଗ କରିଥିଲେ ।

ଦୀର୍ଘକାଳର ପରାଧୀନତା ଯୋଗୁଁ ଓଡ଼ିଶା ଭୂଖଣ୍ଡ କେବଳ ଖଣ୍ଡବିଖଣ୍ଡିତ ହୋଇ ନଥିଲା, ଓଡ଼ିଶାର ଅର୍ଥନୈତିକ ଜୀବନ, ସାମାଜିକ ଅବକ୍ଷୟ ଏବଂ ଜାତୀୟ ଚରିତ୍ର ଦାରୁଣ ସଙ୍କଟ ମଧ୍ୟରେ ଗତି କରୁଥିଲା । ଚତୁର୍ଦ୍ଦିଗରେ ଅଶିକ୍ଷା ଓ କୁସଂସ୍କାରର ଅମା ଅନ୍ଧକାର । ଜାତିଆଣ ଭାବନା ଜର୍ଜରିତ ସ୍ୱାର୍ଥକାତରତା, ଧର୍ମ ନାମରେ ଅତ୍ୟାଚାର, ପୌରୋହିତ୍ୟ ପ୍ରଥାର ଅବିବେକତା ଓ ଅହଂକାର, ମୂର୍ତ୍ତିପୂଜାର ଅନ୍ଧାନୁସରଣ ଜନଜୀବନକୁ ଅତ୍ୟନ୍ତ ବ୍ୟତିବ୍ୟସ୍ତ କରି ପକାଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

ଏହିପରି ଏକ ଅବକ୍ଷୟ ଯୁଗରେ ସତେ ଯେପରି ଏକ ଅବତାର ପୁରୁଷ ରୂପରେ ଆବିର୍ଭୂତ ହୋଇଥିଲେ ସୁନ୍ଦର ଦାସ ବାବାଜୀ । ଇଂରେଜମାନେ ଯେତେବେଳେ ପ୍ରଥମେ ଓଡ଼ିଶା ଭୂମିରେ

Digitized by PPRACHIN, SOA

ପଦାର୍ପଣ କଲେ, ସେମାନେ ମନେକଲେ, ଏହା ଏକ ସମୂତାନର ଦେଶ । ପୌତ୍ତଳିକତା ପ୍ରଥାର ଅତ୍ୟାଗ୍ରହ ଯୋଗୁଁ ସମାଜ ଜୀବନ ଏଠାରେ ଅତ୍ୟନ୍ତ ବିଡ଼ମ୍ବିତ ଅବସ୍ଥାରେ ରହିଛି ।

ଡଇଲିୟମ ଜେ. ଏ. ଲରେନସ ଥିଲେ ସେକାଳରେ ମାଡ୍ରାସ ଆର୍ଟିଲରୀର ଲେଫଟ୍‌ନାଣ୍ଟ । ସେ ଓଡ଼ିଶା ସମ୍ପର୍କରେ ଲେଖିଥିଲେ "Orissa, the garden of superstition" ଶୀର୍ଷକରେ—"Orissa may be compared to a huge caldron, which has been boiling for many hundreds of years into which ignorance, stupidity and bigotry have cast so many poisonous ingredients, that it is difficult to say when the contents will become purified and good," (Orissa and its Evangelization—

By Amos Sutton, 1850—P. 63)

ଲରେନ୍‌ସ ପୁନର୍ବାର ଲେଖିଥିଲେ ଯେ ଓଡ଼ିଶାର ଖ୍ୟାତି ତାହାର ଅସଂଖ୍ୟ ମନ୍ଦିର ପାଇଁ, ଅନେକ ତୀର୍ଥ ଏବଂ ବ୍ରାହ୍ମଣ ପ୍ରଭାବିତ ଅନୁଷ୍ଠାନର ପ୍ରଭାବ ଯୋଗୁଁ । ଏଠାର ଜଗନ୍ନାଥ ସମଗ୍ର ହିନ୍ଦୁ ଜଗତର ଅତ୍ୟନ୍ତ ଆକର୍ଷଣୀୟ ଅନୁଷ୍ଠାନ । ଭାରତର ସର୍ବାଞ୍ଚଳରୁ ହିନ୍ଦୁଯାତ୍ରୀ-ମାନେ ଜଗନ୍ନାଥ ଧାମ ପୁରୀକୁ ଆସିଥାନ୍ତି । ସେ ପୁରୀକୁ ହିନ୍ଦୁମାନଙ୍କର 'ମକା' ଭାବରେ ଆଖ୍ୟାତ କରିଛନ୍ତି । ରକ୍ଷଣଶୀଳତା ଏବଂ ଯାବତୀୟ କୁସଂସ୍କାରର କେନ୍ଦ୍ରସ୍ଥଳ ବୋଲି ଜଗନ୍ନାଥ ଧାମ ବିଖ୍ୟାତ ହୋଇଅଛି । ତାଙ୍କର ଭାଷାରେ —

"It is, as is well known the chief seat in eastern India of Brahmunical power, and the principal stronghold of Hindoo superstition."

ଓଡ଼ିଶା ବିଷୟରେ ଆମୋସ ସଟନଙ୍କ ମନ୍ତବ୍ୟ ଅତ୍ୟନ୍ତ ଭୟଙ୍କର । ପାଦ୍ରୀମାନେ ଓଡ଼ିଶା ଭୂମିରେ ପାଦଦେଇ ସତୀଦାହ ପ୍ରଥା

Digitized by PPRACHIN, SOA

ଦେଖି ବିଚଳିତ ହୋଇଛନ୍ତି । କନ୍ଧ ଆଦିବାସୀମାନେ ଫସଲ ଉତ୍ପାଦନ ପାଇଁ ଶସ୍ୟ କ୍ଷେତ୍ରରେ ମଣିଷ ବଳି ଦେଉଥିଲେ । ଅନ୍ଧ ଧାରଣାର ବଶବର୍ତ୍ତୀ ହୋଇ ଅନେକ ସ୍ଥାନରେ ଶିଶୁକନ୍ୟା ହତ୍ୟା କରାଯାଉଥିଲା । ମୁକ୍ତିଲାଭ ଆଶାରେ କୁଆଡ଼େ ପୁରୀର ରଥଯାତ୍ରା କାଳରେ ଚଳନ୍ତି ରଥଚକା ତଳେ ଆତ୍ମହତ୍ୟା କରିବାପାଇଁ ତୀର୍ଥଯାତ୍ରୀ କୁଣ୍ଠିତ ହେଉ ନଥିଲେ । ତାହା ବ୍ୟତୀତ ସମାଜରେ ଛୁଆଁ ଅଛୁଆଁ ଓ ଜାତିଆଣ ଭାବ ଅତ୍ୟନ୍ତ ଉତ୍କଟ ଆକାର ଧାରଣ କରିଥିଲା । ତଳିଆବର୍ଗର ଲୋକ-ମାନଙ୍କ ସହିତ ତଥାକଥିତ ଉଚ୍ଚବର୍ଗର ଲୋକମାନେ ଆଦୌ ସମ୍ମାନ-ଜନକ ବ୍ୟବହାର କରୁ ନଥିଲେ; ବରଂ ସେମାନେ ଥିଲେ ନାନା ଭାବରେ ଶୋଷିତ, ଅତ୍ୟାଚାରିତ ଓ ଲାଞ୍ଛିତ ।

୧୮୦୬ ଖ୍ରୀଷ୍ଟାବ୍ଦରେ ଡଃ ବଚନାନ ସିରିଆନ ଚର୍ଚ୍ଚ ପରିଦର୍ଶନରେ ଭାରତରେ ଭ୍ରମଣ କଲାବେଳେ ପୁରୀବାଟେ ଓଡ଼ିଶା ଅତିକ୍ରମ କଲା ସମୟରେ ସେଠାରେ ଦର୍ଶନ କରି ଅତ୍ୟନ୍ତ ବିଚଳିତ ହୋଇପଡ଼ିଲେ । ସେ ତୁରନ୍ତ ପୁରୀ ପରିତ୍ୟାଗ କରି ଜୁନ୍ ମାସ ୭ ତାରିଖରେ ଚିଲିକାକୂଳରେ ଅବସ୍ଥାନ କରି ମୂର୍ତ୍ତିପୂଜାର ବିଲୋପପାଇଁ ବିଲାତର ମିସନାରୀମାନେ କିଛି ପଦକ୍ଷେପ ଗ୍ରହଣ କରନ୍ତୁ ବୋଲି ନିଜ ଦେଶକୁ ଚିଠି ଲେଖିଲେ ।

ଏହା ଲେଖା ହେବାର ଦଶବର୍ଷ ପରେ ଇଂଲଣ୍ଡରେ ୧୮୧୬ ମସିହାରେ ବାପଟିଷ୍ଟମାନେ ଏକ ଅନୁଷ୍ଠାନ ଗଠନ କରନ୍ତି ଏବଂ ବଚନାନଙ୍କ ଉଦ୍ଦେଶ୍ୟ ପୂରଣ ପାଇଁ କାର୍ଯ୍ୟ ଆରମ୍ଭ କରାଯାଏ ।

ଏହି ସିଦ୍ଧାନ୍ତ ଅନୁସାରେ ଭାରତରେ କାର୍ଯ୍ୟ କରିବାପାଇଁ ଆସନ୍ତି ରେଭରେଣ୍ଡ ପେଗସ୍ ଓ ରେଭରେଣ୍ଡ ବାମ୍ପଟନ । ସେମାନେ ଶ୍ରୀରାମପୁର ମିସନଙ୍କ ପରାମର୍ଶରେ ୧୮୨୨ ସାଲ ଫେବୃୟାରୀ ୨୨ ତାରିଖ ଦିନ ଓଡ଼ିଶା ଉପକୂଳରେ ଅବତରଣ କରି ରାଜଧାନୀ କଟକକୁ ଆଗମନ କରନ୍ତି । ପରବର୍ତ୍ତୀ ସମୟରେ ଏମାନଙ୍କୁ ସାହାଯ୍ୟ କରିବା ପାଇଁ ଇଂଲଣ୍ଡରୁ ଆସନ୍ତି ରେଭରେଣ୍ଡ ଲେସି ଓ ସଟନ । ଏହି

Digitized by PPRACHIN, SOA

ସମୟରେ କଲିକତା ରାଜଧାନୀରେ ପାଶ୍ଚାତ୍ୟ ଶିକ୍ଷା ପ୍ରବର୍ତ୍ତନ ଯୋଗୁ ନବଜାଗରଣ ଆନ୍ଦୋଳନ ଆରମ୍ଭ ହୋଇଯାଇଥାଏ । ଏହି ଆନ୍ଦୋଳନର ଜଣେ ପ୍ରଭାବଶାଳୀ ନେତା ଥିଲେ ବ୍ରାହ୍ମଧର୍ମର ପ୍ରତିଷ୍ଠାତା ରାଜା ରାମମୋହନ ରାୟ । ତାଙ୍କର ପ୍ରଚେଷ୍ଟାରେ ୧୮୧୭ ସାଲରେ କଲିକତାରେ ହିନ୍ଦୁ କଲେଜ ପ୍ରତିଷ୍ଠା ହୁଏ । ନବଯୁଗର ବାର୍ତ୍ତା ପ୍ରଚାର ପାଇଁ ରାମମୋହନ ପ୍ରକାଶ କରିଥିଲେ ସମ୍ବାଦପତ୍ର 'ସମ୍ବାଦ କୌମୁଦୀ' (୧୮୨୧ ଡିସେମ୍ବର ୪ ତାରିଖ), ମିରାତ-ଉଲ-ଆକବର (ପାର୍ସି ଭାଷାରେ ପ୍ରଥମ ସମ୍ବାଦ ପତ୍ର—୧୮୨୨ ଏପ୍ରିଲ ୧୨ ତାରିଖ), ଓ ବ୍ରାହ୍ମଣସେବାଧି (୧୮୨୧) । ଏହି କାଳର ଅନ୍ୟ କେତୋଟି ସମ୍ବାଦପତ୍ର ମଧ୍ୟ ଅତ୍ୟନ୍ତ ସ୍ମରଣୀୟ । ସେମାନେ ହେଲେ—ଦିଗ୍‌ଦର୍ଶନ (ଏପ୍ରିଲ- ୧୮୧୮), ସମାଚାର ଦର୍ପଣ (୧୮୧୮), ବେଙ୍ଗଲ ଗେଜେଟ (୧୮୧୮), ସମ୍ବାଦ କୌମୁଦୀ—୧୮୨୧, ସମାଚାର ଚନ୍ଦ୍ରିକା—୧୮୨୨, ବଙ୍ଗଦୂତ—୧୮୨୯, ସମ୍ବାଦ ଭାସ୍କର—୧୮୩୯, ସମ୍ବାଦ ପ୍ରଭାକର—୧୮୩୧ ପ୍ରଭୃତି ।

ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ଯେ ଇଂରେଜ ଆଗମନ ଓ ପାଶ୍ଚାତ୍ୟ ଶିକ୍ଷା ପ୍ରସାରର ବହୁକାଳ ପୂର୍ବରୁ ସାଧୁ ସୁନ୍ଦର ଦାସ ପ୍ରକାଶ କରିଥିଲେ କୁଜିବର ସମ୍ବାଦପତ୍ର । କୌଣସି ପରମ୍ପରା ନ ଥାଇ ସାଧୁ ସୁନ୍ଦର ଯେ କପରି ଏତେବଡ଼ ବୈପ୍ଳବିକ ପଦକ୍ଷେପ ଗ୍ରହଣ କରି ପାରିଲେ, ତାହା ଚିନ୍ତା କଲେ ବିସ୍ମିତ ହେବାକୁ ହୁଏ ।

"ସାଧୁ ସୁନ୍ଦର ଦାସ : ଜୀବନ ଓ ସାଧନା"—ଝଙ୍କାର—୩୧ ବର୍ଷ ୧୦ମ ସଂଖ୍ୟା ପ୍ରବନ୍ଧରେ ଅଧ୍ୟାପିକା ଶ୍ରୀମତୀ ଲବଣ୍ୟ ନାୟକ କେତୋଟି ଚମତ୍କାର ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି । "କୁଜିବର ପତ୍ର" ଓଡ଼ିଶାର ପ୍ରଥମ ସମ୍ବାଦପତ୍ର । ଏହା ତାଳପତ୍ରରେ ଜମ୍ବା କଟକ ନନ୍ଦକଟବର୍ତ୍ତୀ ପଦ୍ମପୁର ଗ୍ରାମରେ ତିଆରି ହେଉଥିବା ହରିତାଳ କାଗଜରେ ହାତରେ ଲେଖାଯାଉଥିଲା । ୧୭୬୯ ଖ୍ରୀଷ୍ଟାବ୍ଦରେ ଏହି ପତ୍ରିକା ପ୍ରକାଶିତ ହୋଇଥିବା ଜଣାଯାଏ । ୧୮୦୦ ମସିହାରେ ହିନ୍ଦୀ

Digitized by PPRACHIN, SOA

ଓ ମରହଟ୍ଟୀ ଭାଷାରେ ଏହାର ହାତଲେଖା ଅନୁବାଦ ପ୍ରକାଶ ପାଇଥିଲ ବୋଲି ଶ୍ରୀମଣି ନାୟକ ଉଲ୍ଲେଖ କରିଛନ୍ତି । ସାଧୁ ସୁନ୍ଦରଙ୍କୁ ସମ୍ପାଦନା କାର୍ଯ୍ୟରେ ସହଯୋଗ କରିଥିଲେ ଅନ୍ତରଙ୍ଗ ଶିଷ୍ୟଦ୍ୱୟ ଗଙ୍ଗାଧର ଷଡ଼ଙ୍ଗୀ ଓ ରାମଚନ୍ଦ୍ର ଯାଚକ । ପତ୍ରିକାଟି ପ୍ରକାଶିତ ହେଲପରେ ସାଧୁଙ୍କ ପ୍ରତିଷ୍ଠିତ ବୈଦାନ୍ତିକ ସ୍କୁଲର ଅନ୍ତେବାସୀମାନେ ଏହାକୁ ଆଲୋଚନା କରୁଥିଲେ ଏବଂ ପରେ ପରେ ତାହା କଟକ ବଜାର, ମିସନାରି କେନ୍ଦ୍ରମାନଙ୍କରେ ଦୃଷ୍ଟି ଆକର୍ଷଣ କରିବା ପାଇଁ ରଖାଯାଉଥିଲ । ଏହି ପତ୍ରିକାର ମୁଖ୍ୟ ଉଦ୍ଦେଶ୍ୟ ଥିଲ ଲୋକକଲ୍ୟାଣ ଓ ସମାଜ ସଂସ୍କାର ।

"ସମ୍ବାଦପତ୍ରରୁ ଓଡ଼ିଶାର କଥା" ପୁସ୍ତକରେ ଐତିହାସିକ ସୁଧାକର ପଟ୍ଟନାୟକ ଲେଖିଥିଲେ—"ସେ ଯୁଗରେ ସୁଦ୍ଧା, ଯେତେବେଳେ ବଙ୍ଗଦେଶରେ ମଧ୍ୟ ସମ୍ବାଦପତ୍ରର ନାମ ବୋଧହୁଏ ଶୁଣା ନଥିଲ, ସେତେବେଳେ ସୁନ୍ଦର ବାବାଜୀ କୁଜାବର ମଠରୁ 'କୁଜାବର ପତ୍ର' ନାମରେ ତାଳପତ୍ରରେ କମ୍ବା କଟକ ନିକଟବର୍ତ୍ତୀ ପଦ୍ମପୁର ଗ୍ରାମରେ ସେକାଳର ପ୍ରସ୍ତୁତ ହେଉଥିବା ହଳିତାଳ କାଗଜରେ ହାତରେ ଲେଖା ଗୋଟିଏ ସମ୍ବାଦପତ୍ର ବାହାର କରି ତାକୁ ହାଟ, ମେଳା ବା ପରେ ଖ୍ରୀଷ୍ଟିୟାନ ସମ୍ପ୍ରଦାୟ ଆଦିରେ ପ୍ରଚାର କରୁଥିଲେ ।"

ଏହି ହାତଲେଖା ସମ୍ବାଦପତ୍ର ଏପରି ପ୍ରଭାବଶାଳୀ ଥିଲ ଯେ ଏ ଦେଶରେ କାର୍ଯ୍ୟରତ ପାଦ୍ରୀମାନେ ତାହାର ଇଂରେଜୀ ଅନୁବାଦ କରି କଲିକତାକୁ ପ୍ରେରଣ କରୁଥିଲେ ଏବଂ ସେଠାରେ ତାହା ମିସନାରି-ମାନଙ୍କ ପ୍ରକାଶନରେ ସ୍ଥାନିତ ହେଉଥିଲ । ଏହା କିଛି କମ ଗୌରବର କଥା ନୁହେଁ । ଏହି ପ୍ରସଙ୍ଗରେ କୁଜାବର ପ୍ରକାଶନରେ କୁହାଯାଇଛି—

"The name of this prominent sainc was known throughout Orissa as an old spiritual Rishi and Guru or Sundara Babaji or Dharmapita (Spiritual father) who was not only a holy and Venerable sage but also was regarded as a socio-religious reformer,

Digitized by PPRACHIN, SOA

teacher of vedantism, a great orator, a strict disciplinarian, a staunch nationalist and publicist who published the first vernacular news paper Kujibara Patra (manuscript) during Marahatta and British administration of Orissa till 1838 A.D. × × × His news paper Kujibara-Patra was a foremost independent organ of Orissa in which political, religious, social and administrative affairs of the country were being commented which attracted the attention of the people and British rulers and Rajas and missionaries. This Sadhu's views in his paper or some important religious affairs and legal questions of Orissa were published and commented in London Baptist Missionary reports and journals".

(Kujibara Publication, Pamphlet—No. 7. Preface)

କୁଜିବର ପତ୍ରରେ ସାଧୁ ସୁନ୍ଦରଙ୍କ ମନ୍ତବ୍ୟ ବିଲାତରେ ମିସିନାରୀ ପତ୍ରିକାରେ ଉଦ୍ଧୃତ ହେବା ଅତ୍ୟନ୍ତ ଗୌରବର କଥା । ଏ ଦେଶକୁ ଧର୍ମପ୍ରଚାର ପାଇଁ ଆସିଥିବା ପାଦ୍ରୀମାନେ ଏହି ସନ୍ନ୍ୟାସୀଙ୍କ ବ୍ୟକ୍ତିତ୍ୱ ଓ ପାଣ୍ଡିତ୍ୟ ସଂଦର୍ଶନ କରି ଅଭିଭୂତ ହୋଇଯାଇଥିଲେ । କୁସଂସ୍କାରଚ୍ଛନ୍ନ ଓ ଦୀର୍ଘକାଳ ପରାଧୀନ ଥିବା ଗୋଟିଏ ଅନଗ୍ରସର ଅଞ୍ଚଳରେ ଏପରି ଜଣେ ପ୍ରଗତିଶୀଳ ବ୍ରହ୍ମ ସାଧକ ଯେ ଜନକଲ୍ୟାଣ ପାଇଁ ଜୀବନକୁ ଉତ୍ସର୍ଗ କରିଥିଲେ, ତାହା ବାସ୍ତବିକ ଅତ୍ୟାଶ୍ଚର୍ଯ୍ୟ ମନେ ହୋଇଥାଏ ।

କୁଜିବର ପତ୍ରିକା ସମ୍ପର୍କରେ ଅଧ୍ୟାପିକା ଲାବଣ୍ୟ ନାୟକ ତାଙ୍କ ପ୍ରବନ୍ଧରେ ଲେଖିଥିଲେ—କୁଜିବର ପତ୍ର ଜରିଆରେ ସାଧୁ ସୁନ୍ଦର ମିସନାରୀମାନଙ୍କୁ ଯାହା ପଚାରୁଥିଲେ, ତାହାର ଯଥାର୍ଥ ହେଉଛି— "ହେ ଅମୃତ ସନ୍ତାନଗଣ ! ତୁମ୍ଭେମାନେ ଈଶ୍ୱରଙ୍କର କ୍ରୀତଦାସ କରିଅଛ ।

Digitized by PPRACHIN, SOA

ଏ ଅନ୍ଧାର ସଂସାର ପାଇଁ କ'ଣ କରିଅଛ ? ମୁଁ ଗୋଟିଏ ଗରିବ ସ୍ୱାଧୁ । ମୁଁ ତୁମମାନଙ୍କୁ ଧନସମ୍ପତ୍ତି କିଛି ମାଗୁନାହିଁ, କେବଳ ଏତିକି ପଚାରୁଛି, ଓଡ଼ିଶାବାସୀମାନଙ୍କୁ ଈଶ୍ୱରଙ୍କ ନିୟମ ମାନି ଚଳିବାକୁ ହେଲେ କ'ଣ କରିବାକୁ ହେବ ଓ କିପରି ଶିକ୍ଷା ଦେବାକୁ ହେବ, ତାହାର ବ୍ୟବସ୍ଥା କରୁନାହାନ୍ତି କାହିଁକି ? "ତେଣୁ ଲୋକଙ୍କୁ ଆଧ୍ୟାତ୍ମିକ ପୁରୁଷ କରି ଗଢ଼ିବାପାଇଁ ଓ ଆଦର୍ଶ ଜୀବନଧାରଣ ପାଇଁ କୁଜୀବର ପତ୍ରର ଅବଦାନ ଥିଲା ଅତ୍ୟନ୍ତ ଉଲ୍ଲେଖନୀୟ ।

ସମାଜର ସର୍ବାଙ୍ଗୀନ ଉନ୍ନତି ପାଇଁ କୁଜୀବର ପତ୍ର ଆହ୍ୱାନ ଜଣାଉଥିଲେ । ଏପରି ବହୁମୁଖୀ ଅଭିମୁଖ୍ୟ ଥିବା ସମ୍ବାଦପତ୍ର ଆଧୁନିକ ଯୁଗରେ ବିରଳ କହିଲେ ଚଳେ । କାରଣ ଏହି ପତ୍ରିକାରେ କୃଷି, ଶିଳ୍ପ, ଶିକ୍ଷା, ସ୍ୱାସ୍ଥ୍ୟ, ଶାସ୍ତ୍ରତତ୍ତ୍ୱ ଓ ନୈତିକ ଜୀବନ ବିଷୟରେ ଲେଖା-ମାନ ପ୍ରକାଶିତ ହେଉଥିଲା ।

## ଅନ୍ଧକାର ମଧ୍ୟରେ ଆଲୋକବର୍ତ୍ତିକା

ସାଧୁ ସୁନ୍ଦରଙ୍କ ବାଲ୍ୟଜୀବନ ସମ୍ପର୍କରେ ମମତା ବିଶୋଇ କୋଣାର୍କ—(୫୭ ସଂଖ୍ୟା ୧୯୮୫) ପତ୍ରିକାରେ "ସାଧୁ ସୁନ୍ଦର ଦାସ ଓ କୁଜୀବର" ଶୀର୍ଷକ ପ୍ରବନ୍ଧରେ ବିସ୍ତୃତ ଆଲୋଚନା କରିଛନ୍ତି । ଏଥିରୁ ଜଣାଯାଏ ଯେ ସାଧୁ ସୁନ୍ଦର କଟକ ଜିଲ୍ଲା ଆଠଗଡ଼ ରାଜ୍ୟର କୁମାରପୁର ବା କୁଆଁରପୁର ଗ୍ରାମରେ ଏକ ସୂର୍ଯ୍ୟବଂଶୀୟ କ୍ଷତ୍ରିୟ-କୁଳରେ ୧୭୬୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରୁ ସେ ଥିଲେ ବାପା ମା' ଛେଉଣ୍ଡ । ଗ୍ରାମ୍ୟ ପାଠଶାଳା ଏବଂ ସ୍ଥାନୀୟ ଚାଟଶାଳୀରେ ତାଙ୍କର ଶିକ୍ଷା ଗ୍ରହଣ ସମାପ୍ତ ହୋଇଥିଲା । ଦୀନଦୁଃଖୀଙ୍କ ପାଇଁ ସେ ଥିଲେ ବାଲ୍ୟକାଳରୁ ଦରଦୀ ଓ ସହାନୁଭୂତିଶୀଳ । ସମସ୍ତଙ୍କୁ ସମଦୃଷ୍ଟିରେ ଦେଖିବାକୁ ସୁଖ ମଣୁଥିଲେ । ବେଳେବେଳେ ନିର୍ଜନ ସ୍ଥାନରେ ଏକାକୀ ଚିନ୍ତାମଗ୍ନ ଅବସ୍ଥାରେ ବସି ରହୁଥିଲେ । ତରୁଣ ବୟସରେ ବଣରେ ବୁଲିବା ଏବଂ ବନ୍ୟଜନ୍ତୁ ଶିକାର କରିବା ଥିଲା

Digitized by PPRACHIN, SOA

ତାଙ୍କର ପ୍ରଧାନ ସଭକ । ସେ କିଛିକାଳ ପାଇଁ ଆଠଗଡ଼ ରାଜାଙ୍କ ସେନାବାହାଗରେ ସୈନିକ ଚାକିରି ମଧ୍ୟ କରିଥିଲେ ।

ଏକଦା ବଣ ମଧ୍ୟରେ ଶିକାର କାଳରେ ଶରବିଦ୍ଧ ମୃଗଟିର କରୁଣ ଅବସ୍ଥା ନିରୀକ୍ଷଣ କରି ହଠାତ୍ ତାଙ୍କର ହୃଦୟ ଅଶାନ୍ତିମୟ ଭାବନାରେ ବିଚଳିତ ହୋଇଉଠିଲା । ଗଭୀର ଅନୁତାପରେ ସେ ଅତ୍ୟନ୍ତ ମର୍ମାହତ ହେଲେ । ସୈନିକ ପଦବୀରୁ ଇସ୍ତଫା ପ୍ରଦାନ କରି ଧର୍ମମାର୍ଗରେ ଅଗ୍ରସର ହେବାପାଇଁ ସେ ବଦ୍ଧପରିକର ହେଲେ । ସାମାଜିକ ମୋହ ମାୟା ଓ ବନ୍ଧନକୁ ଛିନ୍ନ କରି ତଉଦୁଆର ନିକଟବର୍ତ୍ତୀ କୁଜାବର ଗ୍ରାମର ଏକ ବିଶାଳ ବଟବୃକ୍ଷ ତଳେ ଅବସ୍ଥାନ କରି ଗଭୀର ତପସ୍ୟାରେ ନିମଗ୍ନ ହେଲେ । ଏହିଠାରେ ସିଦ୍ଧିଲାଭ କରି ସେ ପ୍ରସିଦ୍ଧ ହେଲେ ସୁନ୍ଦର ଦାସ ବାବାଜୀ ନାମରେ । ତାଙ୍କର ପାଣ୍ଡିତ୍ୟ ଓ ଆଧ୍ୟାତ୍ମିକତା ସମାଜର ସବୁଶ୍ରେଣୀର ଲୋକଙ୍କୁ ଆକର୍ଷଣକଲା । ଜାତି ଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ସେ ଆଦର କରୁଥିଲେ ଅତ୍ୟନ୍ତ ଅନ୍ତରଙ୍ଗ ଭାବରେ ।

ସାଧୁଙ୍କ ଉଦ୍ୟମରେ ପ୍ରାଚୀନ ଗୁରୁକୁଳ ଆଦର୍ଶରେ କୁଜାବର-ଠାରେ ଏକ ବୈଦାନ୍ତିକ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠିତ ହୁଏ । ଏଠାରେ ପ୍ରାୟ ପାଞ୍ଚଶହ ଶିଷ୍ୟ ଶିକ୍ଷା ଗ୍ରହଣ କରୁଥିଲେ । ତାଙ୍କର କେତେଜଣ ପ୍ରିୟ ଶିଷ୍ୟ ହେଲେ ଗଙ୍ଗାଧର ଷଡ଼ଙ୍ଗୀ, ରାମଚନ୍ଦ୍ର ଯାଚକ; ଦୈତାରୀ, ବାମଦେବ, ଗଙ୍ଗା ମହାନ୍ତି, ଜଗନ୍ନାଥ ପଟ୍ଟନାୟକ, ଗଙ୍ଗାଧର ବିଶ୍ୱାଳ, କୃପାସିନ୍ଧୁ ସାହୁ, ରାଧୁ ଦାସ, ସୁଦର୍ଶନ ରାଉତ, ରାମକୃଷ୍ଣ ଦାସ, ପରମେଶ୍ୱର ମଲ୍ଲିକ ପ୍ରଭୃତି ।

ସାଧୁ ସୁନ୍ଦରଙ୍କ ଜନ୍ମ ତାରିଖ ସମ୍ପର୍କରେ ବିଭିନ୍ନ ମତ ପ୍ରକାଶିତ ହୋଇଛି । ଏହି ସମ୍ପର୍କରେ ଡଃ କୈଳାଶଚନ୍ଦ୍ର ସିଂହ "ଊନବିଂଶ ଶତାବ୍ଦୀର ଓଡ଼ିଶାରେ ଧର୍ମ ସଂସ୍କାର ଆନ୍ଦୋଳନ ଓ ସାଧୁ ସୁନ୍ଦର ଦାସ" ପ୍ରବନ୍ଧରେ ଲେଖିଥିଲେ—"ତାଙ୍କ ଜନ୍ମ ସମୟ ନିର୍ଦ୍ଧାରଣରେ ଭିନ୍ନ ମତ ଦେଖିବାକୁ ମିଳେ ।"

Digitized by PPRACHIN, SOA

ରେଭରେଣ୍ଡ ଏ. ସଟନ୍ ତାଙ୍କ ଜନ୍ମ ସମୟକୁ ୧୭୫୦ ସାଲର ଚିହ୍ନିତ କଲବେଳେ ସୁଧାକର ପଟ୍ଟନାୟକ ୧୭୭୫ ସାଲର ପାଖାପାଖି ବୋଲି ମତ ପୋଷଣ କରନ୍ତି । ଅଧ୍ୟାପକ ରତ୍ନାକର ପତିଙ୍କ ପରି ଡଃ ହରେକୃଷ୍ଣ ମହତାବ ତାଙ୍କର ଜନ୍ମ ସମୟ ୧୭୨୦ ସାଲ ବୋଲି କହନ୍ତି ।

୧୮୩୦ ସାଲରେ ତାଙ୍କର କାରାବରଣ ଘଟଣାକୁ ଅନୁଧାନ କଲେ ତାଙ୍କ ଜନ୍ମ ସମୟକୁ ୧୭୫୦ ସାଲ ବୋଲି ଗ୍ରହଣ କରିହେବ । ୧୭୨୦ ସାଲକୁ ଯଦି ଗ୍ରହଣ କରାଯାଏ ତେବେ ୧୮୩୦ ସାଲ ବେଳକୁ ତାଙ୍କ ବୟସ ହେବ ୧୧୦ ବର୍ଷ । ୧୧୦ ବର୍ଷରେ ଉପନୀତ ଅତିଶୟ ବାର୍ଦ୍ଧକ୍ୟଗ୍ରସ୍ତ ସାଧୁ ସୁନ୍ଦର ଦାସ ଯେ କାରାବନ୍ଧ ହୋଇଥିବେ ଏହା ଅସମ୍ଭବ ବୋଧହୁଏ ।

ଆଜୀବନ ବ୍ରହ୍ମଚର୍ଯ୍ୟ ଓ ତପସ୍ୟାରତ ସାଧୁ ସୁନ୍ଦର ୧୧୦ ବର୍ଷ ବୟସରେ ସୁସ୍ଥସବଳ ନଥିବେ ବୋଲି ଆଶଙ୍କା କରି ତାଙ୍କର ବୟସକୁ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ । ଅଧିକାଂଶ ଆଲୋଚକ ସାଧୁ ସୁନ୍ଦରଙ୍କର ସମୟ ୧୭୨୦ ରୁ ୧୮୩୮ ବୋଲି ସ୍ଥିର କରିଥାଆନ୍ତି । ସାଧୁ ସୁନ୍ଦରଙ୍କ ବିଷୟରେ ଭାରତ ସେବକ ଲକ୍ଷ୍ମୀନାରାୟଣ ସାହୁ ତାଙ୍କର "Orissa" ନାମକ ପୁସ୍ତକରେ ଏହିପରି ଲେଖିଥିଲେ—

"Late Mahatma Sadhu Sundar Das, the saint and renowned genuine Oriya Sannyasi and religious reformmer of Kujibar, Chowduar, who flourished from 1720 to 1838, who was also publishing manuscript Oriya newspaper and scriptural comments from his Kujibar Math, where the missionaries visited and discussed with him about the starting of village primary schools under his superintendence and also discussed with the Sadhu about the Vedantic—Theism and Decalogue in the year 1826 × × × Thus it will appear that in the

*

year 1826 Mahatma Sundar Das of Orissa took great part in establishing primary schools in Cuttack Dt., and then European Missionaries found this only Sadhu who was known at that time as saint, rishi and religious reformer of Orissa for consultation regarding advancement of rural education apart from religious education."

P. 29-30

ଶ୍ରୀମତୀ ଏମ୍. ଧଳ "Mahatma Sadhu Sundar Das and early Evangelization in Orissa" ପ୍ରବନ୍ଧରେ ମଧ୍ୟ ସାଧୁଙ୍କ ସମୟ ୧୭୨୦—୧୮୩୮ ବୋଲି 'ମତ ପ୍ରକାଶ କରିଅଛନ୍ତି । ଶ୍ରୀମତୀ ଧଳ ଏହି ସାଧୁଙ୍କୁ ଜଣେ ପ୍ରଭାବଶାଳୀ ସଂସ୍କାରକ ବୋଲି ଆଲୋଚନା କରିଛନ୍ତି ।

ଅଧ୍ୟାପକ ରତ୍ନାକର ପତି "Mahatma Sadhu Sundar Das's Advaitism or Absolute Brahma" ପ୍ରବନ୍ଧରେ ସାଧୁଙ୍କର ଆବିର୍ଭାବକାଳ ସମ୍ପର୍କରେ ଆଲୋଚନା କରି ଲେଖିଥିଲେ—"From the Oriya Malikas and anecdotes and printed reports of Rav Lacey, Dr. Sutton, and Peggs in the Baptist magazines (1821—1846) it appears that Sadhu Sundar Das was born at Kunmarpur village of the Athgar State in a Kshatriya family in the year 1720." ଅଧ୍ୟାପକ ପତି ରେଭରେଣ୍ଡ ଲେସିଙ୍କର ଲଣ୍ଡନ ରିପୋର୍ଟ (୧୮୩୯)କୁ ଉଦ୍ଧାର କରି କହନ୍ତି ଯେ ସାଧୁ ସୁନ୍ଦର ଏପ୍ରିଲ ୧୬ ତାରିଖ ୧୮୩୮ ସାଲରେ ମୃତ୍ୟୁବରଣ କରିଥିଲେ । ସମାଧିସ୍ଥ ଅବସ୍ଥାରେ ଓଁ ଉଚ୍ଚାରଣ କରି ସେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ବୋଲି କୁହାଯାଏ । ଏବେ ମଧ୍ୟ କୁଜାବର ମଠରେ ତାଙ୍କର ସମାଧି ପୂଜା ପାଉଅଛି ।

Digitized by PPRACHIN, SOA

## ସଂସ୍କାରକ ସାଧୁ ସୁନ୍ଦର ଦାସ

ସାଧୁ ସୁନ୍ଦର କୁଜାବର ଗ୍ରାମରେ କେବଳ ଗୋଟିଏ ଧର୍ମ-ମହାବିଦ୍ୟାଳୟ ପ୍ରତିଷ୍ଠା କରି ନ ଥିଲେ, ଜନକଲ୍ୟାଣ ପାଇଁ ତାଙ୍କର ଆଶ୍ରମ ଏକ ନ୍ୟାୟାଳୟର କାର୍ଯ୍ୟ କରୁଥିଲା । ଲୋକଙ୍କର ତାଙ୍କ ଉପରେ ଥିଲା ଅଗାଧ ବିଶ୍ୱାସ । କେତେଜଣ ବ୍ରାହ୍ମଣ ପଣ୍ଡିତଙ୍କୁ ନେଇ ସାଧୁ ଏକ ପଞ୍ଚାୟତ ଗଠନ କରି ତାହାର ସଭାପତି ହୋଇଥିଲେ । ନିକଟବର୍ତ୍ତୀ ଗ୍ରାମବାସୀମାନେ ଯେକୌଣସି ବିବଦମାନ ସମସ୍ୟା ବିଷୟରେ ଉପଯୁକ୍ତ ନ୍ୟାୟ ପାଇବା ପାଇଁ ସାଧୁଙ୍କର ଶରଣାପନ୍ନ ହେଉଥିଲେ । ଏହି ସମ୍ପର୍କରେ ଅଧ୍ୟାପକ ରତ୍ନାକର ପତି ତାଙ୍କର ପ୍ରବନ୍ଧରେ କହିଛନ୍ତି -''ସାଧୁଙ୍କ ସଭାପତିତ୍ୱରେ କେତେକ ବ୍ରାହ୍ମଣ ପଣ୍ଡିତଙ୍କୁ ନେଇ ଏକ ପଞ୍ଚାୟତ କୋର୍ଟ ହୋଇଥିଲା ଏବଂ ସେ ଅଞ୍ଚଳର ସମସ୍ତ ବିବାଦ ନିଷ୍ପତ୍ତି ହେଉଥିଲା । ଆଜି ସୁଦ୍ଧା ସେ ଅଞ୍ଚଳର ଲୋକେ ସାଧୁଙ୍କ ମଣ୍ଡପ ଉପରେ ବସି ଆପୋଷରେ ନିଷ୍ପତ୍ତି କରିବାର ଦେଖାଯାଉଛି । ତାଙ୍କର ଆଇନଗତ ବିଚାରବିମର୍ଷ ଲଣ୍ଡନ କାଗଜରେ ସ୍ଥାନ ପାଉଥିଲା ।

ସମାଜର ନାନା ଦୋଷ ଦୁର୍ବଳତା ଓ କୁସଂସ୍କାର ବିରୁଦ୍ଧରେ ସାଧୁ ସୁନ୍ଦର କୁଜାବର ପତ୍ରରେ ଲେଖି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଥିଲେ । ସେ ଥିଲେ ଏକେଶ୍ୱରବାଦୀ । ମୂର୍ତ୍ତି ପୂଜାରେ ତାଙ୍କର ଆଦୌ ଆସ୍ଥା ନ ଥିଲା । ସମାଜରେ ସମସ୍ତଙ୍କୁ ସେ ସମାନ ଚକ୍ଷୁରେ ଦେଖୁଥିଲେ । ଜାତିଭେଦ ପ୍ରଥା ତାଙ୍କ ବିଚାରରେ ଥିଲା ଏକ ସାମାଜିକ କଳଙ୍କ । ସେ ଥିଲେ ସମ୍ପୂର୍ଣ୍ଣ ଅହିଂସାବାଦୀ । ଜୀବହିଂସାକୁ ସର୍ବତୋଭାବରେ ବିରୋଧ କରୁଥିଲେ ।”

ସାଧାରଣ ସନ୍ନ୍ୟାସୀମାନଙ୍କ ମଧ୍ୟରେ ସାଧୁ ସୁନ୍ଦର ଥିଲେ ଏକ ବ୍ୟତିକ୍ରମ । ସେ କେବଳ ଆଧ୍ୟାତ୍ମିକ ତତ୍ତ୍ୱ ପ୍ରଚାର କରି ସନ୍ତୁଷ୍ଟ ନ ଥିଲେ, ତାଙ୍କର କାର୍ଯ୍ୟ ଥିଲା ଅତ୍ୟନ୍ତ ବ୍ୟାପକ ଏବଂ ସମାଜ ଜୀବନ ପାଇଁ ଶୁଭଙ୍କର । ଜଗତର ମଙ୍ଗଳ ବିଧାନ ପାଇଁ ସେ ଯଜ୍ଞର

Digitized by PPRACHIN, SOA

ଆୟୋଜନ କରୁଥିଲେ । ତେଣୁ ସାଧୁଙ୍କୁ ସ୍ମରଣୀୟ କରି ରଖିବା ପାଇଁ ଆଜି ମଧ୍ୟ କୁଜାବରଠାରେ ଭକ୍ତମାନେ ବୈଶାଖମାସ କୃଷ୍ଣପକ୍ଷ ସପ୍ତମୀ ତିଥିରେ ଯଜ୍ଞ ଅନୁଷ୍ଠାନ କରୁଛନ୍ତି ।

ଭଗବାନ ଏକ ଓ ଅବିନଶ୍ୱର ବୋଲି ସାଧୁଙ୍କର ଥିଲା ପ୍ରଧାନ ଉପଦେଶ । ଭାବନା ରାଜ୍ୟରେ ସେ କେତେ ଉଦାର ଓ ମାନ୍ତ-ପରାୟଣ ଥିଲେ, ତାହା କୁଜୀବର ପାମ୍ପଲେଟ ନଂ ୬ ପାଠକଲେ ହୃଦୟଙ୍ଗମ ହୋଇଥାଏ ।—"The Sadhu advised all not to destroy beasts, animals, fishes or birds or any other things that has life, not to cut down trees or shrubs, but to consider all things that have life as ourselves, and as one spirit, for that in all substances, and throughout all materiality Narayan dwells incarnate."

## ଓଡ଼ିଶାରେ ଖ୍ରୀଷ୍ଟଧର୍ମ ଓ ମହାତ୍ମା ସାଧୁ ସୁନ୍ଦର ଦାସ

୧୮୨୨ ଖ୍ରୀଷ୍ଟାବ୍ଦରେ ମିଶନାରୀମାନେ ଓଡ଼ିଶାରେ ଧର୍ମ ପ୍ରଚାର ପାଇଁ ଶ୍ରୀରାମପୁରରୁ ଆସି ଫେବ୍ରୁୟାରୀ ମାସ ୭ ତାରିଖରେ ଓଡ଼ିଶା ଉପକୂଳ ପଟାମୁଣ୍ଡାଇଠାରେ ପଦାର୍ପଣ କଲେ । ଏହି ପାଦ୍ରୀମାନେ ହେଲେ ରେଭରେଣ୍ଡ ଉଇଲିୟମ ବାମ୍ପଟନ ଓ ରେଭରେଣ୍ଡ ଜେମ୍ସ ପେଗ୍ସ । ସେମାନେ ପାଲିଙ୍କିରେ ବସି କଟକରେ ପହଞ୍ଚିଲେ ୧୨ ତାରିଖ ଦିନ । ଅଗଷ୍ଟ ମାସ ୨୪ ତାରିଖ ୧୮୨୪ ସାଲରେ ସଟନ ସାହେବ ଆସି ସେମାନଙ୍କ ସହିତ ଯୋଗ ଦେଇଥିଲେ । ଶ୍ରୀରାମପୁର ପ୍ରେସରେ ମୁଦ୍ରିତ ବାଇବେଲ ଏବଂ ଖ୍ରୀଷ୍ଟୀୟ ସୁସମାଚାର ପ୍ରଚାର କରିବା ଥିଲା ଏହି ମିଶନାରୀମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ । ସେମାନେ "ଏକ ଈଶ୍ୱର" କଥା କହିବା ପୂର୍ବରୁ କୁଜୀବରଠାରେ ସାଧୁ ସୁନ୍ଦର ତାଙ୍କର ବୈଦାନ୍ତିକ ଶିକ୍ଷାପୂତନ ଜଣଆରେ ତାହା ପ୍ରଚାର କରୁଥିଲେ ବହୁତ ଦିନରୁ । ଧର୍ମ ଭାବନାରେ ସାଧୁ ସୁନ୍ଦର ଥିଲେ ଅତ୍ୟନ୍ତ ଉଦାର ଓ ପ୍ରଗତିଶୀଳ ।

Digitized by PPRACHIN, SOA

ସଟନ ସାହେବଙ୍କ ବିବରଣୀରୁ ଜଣାଯାଏ ଯେ କୁଜୀବର ବାବାଜୀ ସାଧୁ ସୁନ୍ଦର ଦାସ ୧୮୬୭ ସାଲ ଅକ୍ଟୋବର ଦଶ ତାରିଖରେ ଏକ ସର୍ବଧର୍ମ ସମ୍ମିଳନୀ ଆହ୍ୱାନ କରିଥିଲେ । ଏହି ସମ୍ମିଳନୀରେ ଯୋଗଦେବା ପାଇଁ ଏଗାର ଜଣ ଶିଷ୍ୟଙ୍କ ଜରିଆରେ କଟକର ପାଦ୍ରୀମାନଙ୍କୁ ନିମନ୍ତ୍ରଣ କରିଥିଲେ ସାଧୁ ସୁନ୍ଦର । ଏତେ-ବେଳକୁ ସାଧୁ ସୁନ୍ଦର ବାଇବେଲ ସଂଗ୍ରହ କରି ପାଠ କରି ସାରିଥିଲେ ଏବଂ ଯୀଶୁଙ୍କର ଦଶଆଜ୍ଞା ବିଷୟରେ ସେ ଶିଷ୍ୟମାନଙ୍କୁ ଅବହିତ କରାଉଥିଲେ । ପ୍ରଥମ ସାକ୍ଷାତରେ ଏହି ଇଉରୋପୀୟ ମିଶନାରୀଗଣ ସାଧୁ ସୁନ୍ଦରଙ୍କର ବ୍ୟକ୍ତିତ୍ୱ ଓ ସୌମ୍ୟଶାନ୍ତ ସ୍ୱରୂପ ଦର୍ଶନ କରି ମୁଗ୍ଧ ହୋଇଥିବା ଜଣାଯାଏ । ଆଳାପ ଆଲୋଚନା କରି ସେମାନେ ଅନୁଭବ କଲେ ଯେ ସାଧୁ ଜଣେ ଅସାଧାରଣ ବିଜ୍ଞ ପଣ୍ଡିତ । ନାନା ଶାସ୍ତ୍ରରେ ତାଙ୍କର ପାରଦର୍ଶିତା ଓ ବିଚକ୍ଷଣ ବୁଦ୍ଧି ଦେଖି ସେମାନେ ଅବାକ୍ ହୋଇ ପଡ଼ିଥିଲେ । ସେମାନେ ସାଧୁ ସୁନ୍ଦରଙ୍କୁ ତିନିଗୋଟି ପ୍ରଶ୍ନ ପଚାରି ଯେଉଁ ଉତ୍ତର ପାଇଥିଲେ ତାହା ଉଲ୍ଲେଖ କରିଛନ୍ତି ରେଭରେଣ୍ଡ ହୃଦୟଚନ୍ଦ୍ର ନନ୍ଦ ତାଙ୍କ ଲିଖିତ "କଟକ ପରମାର୍ଥ ବିଦ୍ୟାଳୟର ସଂକ୍ଷିପ୍ତ ଇତିହାସ" ପ୍ରବନ୍ଧରେ ।

"ପ୍ରଥମ ପ୍ରଶ୍ନ ଆପଣ ସର୍ବଧର୍ମ ସମନ୍ୱୟର ଭାବ ଲୋକମାନଙ୍କୁ ବୁଝାଉଅଛନ୍ତି; କିନ୍ତୁ ଆପଣଙ୍କର ହିନ୍ଦୁ ଜାତିରେ ଏପରି ଅସ୍ପୃଶ୍ୟତା ଅର୍ଥାତ୍ ଛୁଆଁ ଅଛୁଆଁ ଭେଦଭାବ ଦେଖାଯାଏ କାହିଁକି ?

ଏହି ପ୍ରଶ୍ନର ଉତ୍ତରରେ ସାଧୁ କହିଲେ—ଯେ ପର୍ଯ୍ୟନ୍ତ ଲୋକେ ଅଜ୍ଞାନ ଅନ୍ଧକାରରେ ପଡ଼ିଥାଆନ୍ତି, ସେ ପର୍ଯ୍ୟନ୍ତ ତାଙ୍କର ଛୁଆଁ ଅଛୁଆଁ ଭାବ ଥାଏ । ପ୍ରକୃତ ଭଗବତ୍ ଜ୍ଞାନ ଲାଭ କଲାପରେ ଭେଦ-ଭାବର ସ୍ଥାନ ନାହିଁ । ଯେପରି ତୁମ୍ଭେମାନେ ଓ ମୁଁ ଏକ ଆସନରେ ବସିଅଛୁଁ ।

ଦ୍ୱିତୀୟ ପ୍ରଶ୍ନ—ବାଇବେଲରେ ଥିବା ଦଶ ଆଜ୍ଞା ସମ୍ବନ୍ଧରେ ଆପଣଙ୍କର ମତ କ'ଣ ? ଏହି ପ୍ରଶ୍ନର ଉତ୍ତରରେ ସାଧୁ କହିଥିଲେ ଯେ

Digitized by PPRACHIN, SOA

ଏହା ସମ୍ପୂର୍ଣ୍ଣ ସତ୍ୟ ଅଟେ । ଏହା ଆମ୍ଭମାନଙ୍କ ହିନ୍ଦୁଧର୍ମର ମୌଳିକ ମତ ମଧ୍ୟ ଅଟେ । ଏହି ମତକୁ ଲୋକମାନେ ବରାବର ପାଳିଲେ ଆମ୍ଭର ଭେଦଜ୍ଞାନ ରହିବ ନାହିଁ; ପରସ୍ପର ପରସ୍ପରକୁ ପବିତ୍ର ପ୍ରେମ ଦେବେ ଓ ଏହି ପ୍ରେମ ହିଁ ସ୍ୱର୍ଗପ୍ରାପ୍ତି ବା ଭଗବାନଙ୍କ ପଦାରବିନ୍ଦ ଲାଭର ଏକମାତ୍ର ପଥ । ଏହା କେବଳ ଯୋଗୀମାନେ ଯୋଗ ସାଧନା ଦ୍ୱାରା ଲାଭ କରନ୍ତି ।

ତୃତୀୟ ପ୍ରଶ୍ନ—ଯୀଶୁ ଖ୍ରୀଷ୍ଟଙ୍କର କ୍ରୁଶରେ ପ୍ରାଣଦାନର ମହତ୍ତ୍ୱ କ'ଣ ? ଏହି ପ୍ରଶ୍ନ ଶୁଣିବା ମାତ୍ରେ ସାଧୁ କହିଥିଲେ ଯେ ଏହିଠାରେ ଯୀଶୁଙ୍କର ମହାମାନବତା, ଈଶ୍ୱରଙ୍କ ପୁତ୍ରତ୍ୱ ଓ ବିଶ୍ୱଭ୍ରାତୃତ୍ୱ ଦେଖା ଦେଇଅଛି । କାରଣ ଫାଶୀକାଠରୁ ଜଣକୁ ମୁକ୍ତ ଦେଇ ନିଜେ ଫାଶୀ କାଠରେ ଝୁଲି ସମସ୍ତ ମାନବଙ୍କୁ ମୁକ୍ତିମାର୍ଗକୁ ନେଇ ପାପଭାର ଲାଘବ କରିଅଛନ୍ତି । ଏହା କମ୍ ଗୌରବର କଥା ନୁହେଁ । ଏହିପରି ଭାବ ସାଧୁଙ୍କର ଦେଖି ଓ ଶୁଣି ଆମ୍ଭେମାନେ ବହୁ ଆନନ୍ଦ ଉପଭୋଗ କଲୁ । ସେ ଆମ୍ଭମାନଙ୍କ ଖାଇବାପାଇଁ ଦୁଧ ଓ ଘିଅର ଆୟୋଜନ କରିଥିଲେ । ଆମ୍ଭେମାନେ ସାଧୁଙ୍କ ପରିଚର୍ଯ୍ୟାରେ ସନ୍ତୁଷ୍ଟ ହୋଇ ଫେରିଲୁ ।"

ଶ୍ରୀମତୀ ଏମ୍. ଧଲ, ଏହି ସାଧୁଙ୍କ ସମ୍ପର୍କରେ "The Calcutta Christian Observer" ପତ୍ରିକାର ଅଭିମତ ଏହିପରି ଉଦ୍ଧାର କରିଥିଲେ—"He was a kind of Hindu reformer thoroughly dissatisfied with idolatry and seeking for something better....He was a man of greater intelligence and used to expatiate with the most cutting satire on the evils of Hinduism holding it up in the most striking way to deserved contempt and diverting the minds of his followers of all respect for the idols of their ancestors." ବଙ୍ଗ ଦେଶର ରାଜା ରାମମୋହନଙ୍କ ପୂର୍ବରୁ ସାଧୁ ସୁନ୍ଦର ଅନଗ୍ରସର ଓଡ଼ିଶା ଭୂଖଣ୍ଡରେ

Digitized by PPRACHIN, SOA

ଏକେଶ୍ୱରବାଦ ପ୍ରଚାର କରିଥିଲେ । ସେ କାଳରେ ପ୍ରଚଳିତ ଯାବତୀୟ କୁସଂସ୍କାର ବିରୁଦ୍ଧରେ ସାଧୁଙ୍କର ସଂଗ୍ରାମ ଅବ୍ୟାହତ ରହିଥିଲା । ସାଧୁ ସୁନ୍ଦର ବାଇବେଲର ବାଣୀକୁ ମଧ୍ୟ ଅତ୍ୟନ୍ତ ଚମତ୍କାର ଭାବରେ ବିଶ୍ଳେଷଣ କରି ତାହାର ନୈତିକ ଭାବଧାରା ବିଷୟରେ ସୁନ୍ଦର ଭାବରେ ବୁଝାଉଥିଲେ ।

ଦୀର୍ଘ ଛଅବର୍ଷକାଳ ମିଶନାରୀମାନେ ଧର୍ମପ୍ରଚାର କରିଥିଲେ ସୁଦ୍ଧା ଜଣେ ହେଲେ କେହି ଖ୍ରୀଷ୍ଟଧର୍ମ ଗ୍ରହଣ କରି ନଥିଲେ । ସେମାନଙ୍କ ମଧ୍ୟରେ ହତାଶା ଖେଳି ବୁଲୁଥିଲା । ମାତ୍ର ସାଧୁ ସୁନ୍ଦରଙ୍କର ଏକେଶ୍ୱର ବ୍ୟାଖ୍ୟାନ ଯୋଗୁ ତାଙ୍କର ପ୍ରିୟତମ ଶିଷ୍ୟ ଗଙ୍ଗାଧର ଷଡ଼ଙ୍ଗୀ ୧୮୨୮ ସାଲରେ ଏବଂ ରାମଚନ୍ଦ୍ର ଜାଚକ ୧୮୨୯ ସାଲରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ପରେ ପରେ ସାଧୁ ସୁନ୍ଦରଙ୍କର ଆଉ କେତେଜଣ ଶିଷ୍ୟ—ଯଥା ଦୈତାରି ନାୟକ, ଶିବ ସାହୁ, ଶିବ ପାତ୍ର, ପର୍ଶୁ ରାଉତ, ରଘୁ ଦାସ, ବାମଦେବ ସାହୁ, ହରି ପାଢ଼ୀ, କୃପାସିନ୍ଧୁ ସାହୁ, ବିଲୋଚନ ପ୍ରଭୃତି ହିନ୍ଦୁଧର୍ମ ପରିତ୍ୟାଗ କରି ଖ୍ରୀଷ୍ଟଧର୍ମ ଆଦରି ନେଲେ । ଖ୍ରୀଷ୍ଟଧର୍ମ ପ୍ରଚାର ପାଇଁ ସାଧୁ ସୁନ୍ଦର ସତେ ଯେପରି ଫସଲ କିଆରି ପ୍ରସ୍ତୁତ କରିଦେଲେ ଏବଂ ସେହି ଫସଲକୁ ଆନନ୍ଦରେ ଅମଳ କଲେ ମିଶନାରୀମାନେ । ସେଥିପାଇଁ ପାଦ୍ରୀ ଜେମ୍‌ସ ପେଗ୍‌ସ କହିଥିଲେ—"One Soweth and another reapeth."

## ସାଧୁ ସୁନ୍ଦରଙ୍କ କାରାବରଣ

ଶ୍ରୀମତୀ ଏମ୍. ଧଳ ତାଙ୍କ ପ୍ରବନ୍ଧରେ ଲେଖିଛନ୍ତି ଯେ ସାଧୁ-ସୁନ୍ଦର ତାଙ୍କର କେତେଜଣ ଶିଷ୍ୟଙ୍କୁ ଧର୍ମାନ୍ତର ପାଇଁ ପ୍ରହାର କରିବାରୁ ସେହି ଅଭିଯୋଗରେ ଜେଲବରଣ କରିଥିଲେ । ମାତ୍ର ଅଧ୍ୟାପିକା ଶ୍ରୀମତୀ ଲାବଣ୍ୟ ନାୟକ ତାଙ୍କ ପ୍ରବନ୍ଧରେ ଭିନ୍ନ ମତ ପୋଷଣ କରିଥିବା ଜଣାଯାଏ । "ଖ୍ରୀ ୧୮୩୦ରେ ପାଦ୍ରୀମାନେ ଦୁଇଟି ହିନ୍ଦୁ ନାରୀଙ୍କୁ ତାଙ୍କର ସ୍ୱାମୀ ଓ ଅଭିଭାବକଙ୍କ ବିନାନୁମତିରେ ଲୁବନ ଦେଇ ଖ୍ରୀଷ୍ଟ

Digitized by PPRACHIN, SOA

ଧର୍ମରେ ଦୀକ୍ଷିତ କରିବାରୁ ସାଧୁ ସୁନ୍ଦର କଲେକ୍ଟରଙ୍କଠାରେ ଅଭିଯୋଗ କରିଥିଲେ । ଗଣ୍ଡଗୋଳ ଆଶଙ୍କା କରି କଲେକ୍ଟର ସେହି ମୋକଦ୍ଦମାକୁ ଖାରଜ କରିଦେବାରୁ ସେ ତତ୍କାଳୀନ ଜିଲ୍ଲା ଜଜ୍ ଉଇଲିୟମ ଉଇଲ୍‌କିନ୍‌ସନଙ୍କଠାରେ ପୁନଃ ଦରଖାସ୍ତ କଲେ । ଫଳରେ ମିସନାରି-ମାନଙ୍କୁ ୫୦ ଟଙ୍କା ଜୋରିମାନା ଓ ଭବିଷ୍ୟତରେ ଏତାଦୃଶ କାର୍ଯ୍ୟରୁ ନିବୃତ ରହିବା ପାଇଁ ନିର୍ଦ୍ଦେଶ ଦିଆଗଲା । + + + ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବାକୁ ଯାଇ ପ୍ରତ୍ୟେକ ସାଧୁ ସନ୍ଥ ଓ ମହା-ମନୀଷୀମାନଙ୍କୁ ଯେପରି ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼େ, ସେହିପରି ପରିଶେଷରେ ପାଦ୍ରୀମାନଙ୍କ ଚକ୍ରାନ୍ତରେ ସାଧୁ ସୁନ୍ଦରଙ୍କୁ ଏକମାସ କାରାଦଣ୍ଡ ଭୋଗିବାକୁ ହେଲା ।”

ଡଃ କୈଳାସ ଚନ୍ଦ୍ର ସିଂହ ‘ଊନବିଂଶ ଶତାବ୍ଦୀର ଓଡ଼ିଶାରେ ଧର୍ମସଂସ୍କାର ଆନ୍ଦୋଳନ ଓ ସାଧୁ ସୁନ୍ଦର ଦାସ’ ପ୍ରବନ୍ଧରେ ଏହି ବିଷୟରେ ଉଲ୍ଲେଖ କରିଛନ୍ତି —“ଖ୍ରୀଷ୍ଟୀୟାନ ପାଦ୍ରୀମାନେ ଧର୍ମପ୍ରଚାର ଲାଗି ଅସତ୍ ପନ୍ଥା ଅନୁସରଣ କରୁଛନ୍ତି ବୋଲି ସାଧୁ ସୁନ୍ଦର ଇଂରେଜ ପ୍ରଶାସକଙ୍କଠାରେ ଅଭିଯୋଗ କଲେ । ମାତ୍ର ଓଡ଼ିଶାରେ ଖ୍ରୀଷ୍ଟିୟାନ ଧର୍ମ ପ୍ରଚାରରେ ବାଧା ସୃଷ୍ଟି କରୁଥିବାର ପାଲଟା ଅଭିଯୋଗରେ ସାଧୁ ସୁନ୍ଦର ଦାସଙ୍କୁ ୯ । ୮ । ୧୮୩୦ ତାରିଖରେ କଟକ ଜେଲରେ କାରାବରଣ କରିବାକୁ ପଡ଼ିଥିଲା ।”

ଯେଉଁ ମିଶନାରିମାନେ କୁଞ୍ଜବର ମଠରେ ଅତିଥି ହୋଇ ଆପ୍ୟାୟିତ ହୋଇଥିଲେ, ସାଧୁ ସୁନ୍ଦରଙ୍କ ପାଣ୍ଡିତ୍ୟ ଓ ଚରିତ୍ରବତ୍ତାରେ ମୁଗ୍ଧ ହୋଇ ଯେଉଁମାନେ କହିଥିଲେ—“It is a true picture of the moral world in heathen lands of Utkal.” ଏବଂ ପୁନଶ୍ଚ ସାଧୁଙ୍କ ଉଦାର ଭାବନା ଯୋଗୁଁ ଖ୍ରୀଷ୍ଟଧର୍ମାନ୍ତରୀକରଣସହଜ ହେଲା ବୋଲି ଯେଉଁମାନେ ‘ଉତ୍‌ଫୁଲିତ ହୋଇ ଉଠିଥିଲେ, ସେହି-ମାନେ ଅନ୍ୟାୟ ଅଭିସନ୍ଧି ରଖି ସାଧୁଙ୍କୁ କାରାଗାରରେ ବନ୍ଦୀ କରିବାକୁ କୁଣ୍ଠିତ ହେଲେ ନାହିଁ ।

Digitized by PPRACHIN, SOA

ଏହିସବୁ ଦୁର୍ଘଟଣା ସତ୍ତ୍ୱେ ସାଧୁ ସୁନ୍ଦରଙ୍କର ମହିମା ହ୍ରାସ ହୋଇ ନ ଥିଲା । ସ୍ୱୟଂ ଯୀଶୁଖ୍ରୀଷ୍ଟ ସାଧୁ ସୁନ୍ଦର ଦାସ ରୂପେ ଜନ୍ମଗ୍ରହଣ କରିଛନ୍ତି ବୋଲି ତାଙ୍କର ଶିଷ୍ୟମାନେ ବିଶ୍ୱାସ କରୁଥିଲେ । ଏହି ବିଷୟ ୧୮୩୯ ସାଲରେ ଜେନେରାଲ ବାପ୍‌ଟିଷ୍ଟ ରିପୋର୍ଟରେ ଲିପିବଦ୍ଧ ହୋଇଥିଲା ଏହିପରି—

"Sundar Das asuming the character of Christ."

## ସାଧୁ ସୁନ୍ଦରଙ୍କ ଧର୍ମ-ଦର୍ଶନ

ସାଧୁ ସୁନ୍ଦର ନିଜର କୁଞ୍ଜବିହାର ପଦରେ କେବଳ ଧର୍ମ ଉପଦେଶ ପ୍ରଚାର କରୁ ନଥିଲେ ଅଥବା ନିଜର ବୈଦାନ୍ତିକ ଶିକ୍ଷାସୂଚନରେ ଆଧ୍ୟାତ୍ମିକ ଭାବନାର ଚର୍ଚ୍ଚା କରୁ ନ ଥିଲେ, ସେ ନିଜର କେତେକ ଲେଖା, ଯଥା—ଗ୍ରନ୍ଥ, ଚୌପଦୀ ଓ ମାଳିକା ପ୍ରଭୃତିରେ ତାହା ଲିପିବଦ୍ଧ କରି ଯାଇଅଛନ୍ତି । ଦୁଃଖର ବିଷୟ ଯେ, ଆଜି ପର୍ଯ୍ୟନ୍ତ ଏଗୁଡ଼ିକ ସଂକଳିତ ହୋଇପାରି ନାହିଁ । ତେବେ କୁଞ୍ଜବିହାର ପ୍ରକାଶନ ଅଷ୍ଟମ ପାମ୍ପଲେଟରେ ସ୍ୱନାମଧନ୍ୟ ଦର୍ଶନ ଅଧ୍ୟାପକ ରତ୍ନାକର ପତି ସାଧୁ ସୁନ୍ଦରଙ୍କ ବ୍ରହ୍ମଦର୍ଶନ ସମ୍ପର୍କରେ ଆଲୋଚନା କରିଥିଲେ ।

ସାଧୁ ସୁନ୍ଦର କେତେକ ଲେଖା ମରହଟ୍ଟା-ହିନ୍ଦୀ ଭାଷାରେ ଲେଖିଥିବା ଜଣାଯାଏ । ସେ ବେଦାନ୍ତ, ପୁରାଣ, ଖ୍ରୀଷ୍ଟଧର୍ମ ଓ ସୁଫିଧର୍ମ ବିଷୟରେ ଆଲୋଚନା କରୁଥିଲେ । ମରହଟ୍ଟା-ଶାସନ ଅଧୀନରେ ଓଡ଼ିଆ ଭୂଖଣ୍ଡ ରହିଥିବାରୁ ସାଧୁଙ୍କର ବେଦାନ୍ତ ସ୍କୁଲକୁ ଅଧ୍ୟୟନ କରିବା ପାଇଁ ନାଗପୁର ଓ ଜବଲପୁରରୁ ମଧ୍ୟ ଅନେକ ଛାତ୍ର ଆସୁଥିଲେ ଧର୍ମଦର୍ଶନ ଅଧ୍ୟୟନ କରିବା ପାଇଁ ମରହଟ୍ଟା ଗଭର୍ଣ୍ଣରଙ୍କ ପ୍ରଭାବରେ । ସାଧୁଙ୍କ ଆଶ୍ରମରେ ୫୦୦ ଛାତ୍ର ଅଧ୍ୟୟନ କରୁଥିଲେ ବୋଲି ରେଭରେଣ୍ଡ ସଟନ ଏବଂ ଲଣ୍ଡନର ବାପଟିଷ୍ଟ ମିସନାରୀ ସୋସାଇଟି ଶତବାର୍ଷିକୀ ଗ୍ରନ୍ଥ (୧୭୯୨—୧୮୯୨)ର ସମ୍ପାଦକ John Brown Myers ଉଲ୍ଲେଖ କରିଅଛନ୍ତି ।

Digitized by PPRACHIN, SOA

ଅଧ୍ୟାପକ ରତ୍ନାକର ପତି ସାଧୂଙ୍କ ଉପଦେଶ ସମ୍ପର୍କରେ ଲେଖିଛନ୍ତି—ସାଧୁ କହୁଥିଲେ ଇନ୍ଦ୍ରିୟ ସଂଯମ କର, ଶୃଙ୍ଖଳିତ ଓ ସାଧୁ ଚରିତ ହୁଅ, ଦୈନିକ ଆଗ୍ରହ ବଚ୍ଛରରେ ମାତୃପିତୃପୂର୍ଣ ପ୍ରାର୍ଥନା ଅନୁସରଣ କର । କୌଣସି ପ୍ରକାର ନିଶାପାନକୁ ସେ ନିଷେଧ କରୁଥିଲେ । ଅଯଥା ବୃକ୍ଷଚ୍ଛେଦନ ଓ ପଶୁହତ୍ୟା କର ନାହିଁ । କାରଣ ସର୍ବଘଟରେ ଈଶ୍ୱର ବିଦ୍ୟମାନ ।

ସେ କହୁଥିଲେ—ମିଥ୍ୟା ନ କହ, ଚୋରି ନ କର, ନାରୀ ହରଣ କର ନାହିଁ, କପଟତା, ଈର୍ଷା ଭାବନା, କ୍ରୋଧ ଓ ଘୃଣାଠାରୁ ଦୂରରେ ରହ । ଶତ୍ରୁକୁ ମଧ୍ୟ ପ୍ରେମ କର । ସ୍ୱଜନ ଓ ପରିବାରକୁ ସ୍ନେହ କର । ବୟସ୍କମାନଙ୍କୁ ଭକ୍ତି କର । କାହାକୁ ଠକ ନାହିଁ କିମ୍ବା କାହାର ବିରୁଦ୍ଧରେ ମିଥ୍ୟା ସାକ୍ଷ୍ୟ ଦିଅ ନାହିଁ । ଦୁଃଖୀ ଓ ଅଭାବୀ ଲୋକଙ୍କୁ ସାହାଯ୍ୟ କର ।

ସାଧୁ ସୁନ୍ଦରଙ୍କର ଗୋଟିଏ ଓଡ଼ିଆ ଗୀତ ଏଠାରେ ଉଦ୍ଧାର କରିଯାଉଅଛି । ଫକୀରମୋହନ ସେନାପତି ଏହି ଗୀତଟି ମରହଟ୍ଟା-ହିନ୍ଦୀରୁ ଅନୁବାଦ କରି ନିଜର 'ଅବସର ବାସରେ' କବିତା ବହିରେ ସ୍ଥାନିତ କରିଥିଲେ । ଏହି ଅସମ୍ପୂର୍ଣ୍ଣ କବିତାଟିର ଶୀର୍ଷକ ଥିଲା "ଅଦ୍ୱୈତବାଦ ଚୌପଦୀ ଛାନ୍ଦ ।"

"ଶୁଣ ହେ। ଅଦ୍ୱୈତ ବିଷୟ ପ୍ରକାଶ
ନାହଂ ନତ୍ୱଂ ନା ଜନ୍ତୁ ବାସ ।
ନାହିଁ ତ ପ୍ରପଞ୍ଚ ନାହିଁ ତ ପ୍ରସାର,
ନାହିଁ ତହିଁ ସୃଷ୍ଟି ସୃଜନ ସଂହାର ।
ନାହିଁ ତ ପ୍ରକୃତି ପୁରୁଷ ନ ଇଚ୍ଛା,
ନାହିଁ ତହିଁ କାଳ କର୍ମ ନାହିଁ ବାଞ୍ଛା ।
ନାହିଁ ତହିଁ ଶ୍ରୁତି ଶ୍ରବଣ ନା ମୂଳ,
ନାହିଁ ତହିଁ ସୂକ୍ଷ୍ମ ନାହିଁ ତହିଁ ସ୍ଥୂଳ ।
ନାହିଁ ତହିଁ ତତ୍ତ୍ୱ ଅତତ୍ତ୍ୱ ବିଭେଦ,

Digitized by PPRACHIN, SOA

ନାହିଁ ତହିଁ ବସ୍ତୁ ପୁରାଣ ବା ବେଦ ।
ନାହିଁ ତହିଁ ବର୍ଣ୍ଣ ବିବର୍ଣ୍ଣ ବିଧାନ,
ନାହିଁ ତହିଁ ରୂପ ଅରୂପର ସ୍ଥାନ ।
ନାହିଁ ତହିଁ ଯାପକ ବ୍ୟାପକ ଦେଖା,
ନାହିଁ ତହିଁ ରୂପ ଅରୂପ ବା ରେଖା ।
ନାହିଁ ତହିଁ ଜ୍ୟୋତି ଅଜ୍ୟୋତି ବିଷୟୀ,
ନାହିଁ ତହିଁ ଏକ, ନାହିଁ ତହିଁ ଦୁଇ ।
ନାହିଁ ତହିଁ ଆଦି ନ ମଧ୍ୟ ନ ଅନ୍ତ,
ନାହିଁ ତହିଁ ପାଳକ ନାହିଁ ହନ୍ତା ହନ୍ତ ।
ନାହିଁ ତହିଁ ଶକ୍ତି ନାହିଁ ତହିଁ ଶିବ,
ନାହିଁ ତହିଁ ଜନ୍ମ ନାହିଁ ତହିଁ ଜୀବ ।
ନାହିଁ ତହିଁ ଲେଖ ନାହିଁ ତ ଲେଖକ,
ନାହିଁ ତହିଁ କର୍ତ୍ତା ନାହିଁ ତ କାରକ ।
ନାହିଁ ତହିଁ ସ୍ୱର୍ଗ ନରକ ନିବାସ,
ନାହିଁ ତ ଆଶକ୍ତି ନାହିଁ ତହିଁ ଆଶ ।
ନାହିଁ ତହିଁ ପାପ ନ ପୁଣ୍ୟ ଧରିତା,
ନାହିଁ ତହିଁ ଧର୍ମ ଅଧର୍ମ କରିତା ।
ନାହିଁ ତହିଁ ଜ୍ଞାନୀ ଅଜ୍ଞାନୀ ବା ମୂର୍ଖ,
ନାହିଁ ତହିଁ ବାଦ ବିବାଦ ବା ତର୍କ ।
ନାହିଁ ତହିଁ ହୋମ ନ ଯଜ୍ଞ ବିଧାନ,
ନାହିଁ ତହିଁ ଭେଦ ନାହିଁତ ସମାନ ।
ନାହିଁ ତହିଁ ଶାଖା ଚ୍ଛେଦ ସର୍ଗ ସନ୍ଧ,
ନାହିଁ ତହିଁ ଦେବ ମାନବ ଗନ୍ଧର୍ବ ।
ନାହିଁ ତହିଁ ଇଷ୍ଟ ଅନିଷ୍ଟ ବା ଶାନ୍ତ,
ନାହିଁ ତ ସଗୁଣ ନିର୍ଗୁଣ ବୃତ୍ତାନ୍ତ ।
ନାହିଁ ତ ସେବକ ସେବ୍ୟ ନ ସେବା,
ନାହିଁ ତହିଁ ପ୍ରେମ ନାହିଁ ଛନ୍ଦ ଲେବା ।
ନାହିଁ ତହିଁ ଭବ ନାହିଁ ତହିଁ ଭକ୍ତି,

Digitized by PPRACHIN, SOA

ନାହିଁ ତହିଁ ମୋକ୍ଷ ନାହିଁ ତହିଁ ମୁକ୍ତି ।
ନାହିଁ ତହିଁ ପାପ ନାହିଁ ତହିଁ ପାପୀ,
ନାହିଁ ତହିଁ ମନ୍ତ୍ର ନାହିଁ ଜପ ଥାପି ।
ନାହିଁ ତ ସାଧକ ସିଦ୍ଧି ନ ସମାଧି,
ନାହିଁ ତହିଁ ଯୋଗ ନାହିଁ ରୋଗ ବ୍ୟାଧି ।
ନାହିଁ ତହିଁ ମୁଦ୍ରା ବନ୍ଧନ ବଧି,
ନାହିଁ ତହିଁ କୁଣ୍ଡଳନା ନାହିଁ ସିଦ୍ଧି ।
ନାହିଁ ତହିଁ ତନ୍ତ୍ର ନା ନାଡ଼ି ପ୍ରସାର,
ନାହିଁ ତହିଁ ବେଧ ବେଧ ନ ଦ୍ୱାର ।
ନାହିଁ ତହିଁ ଲିଙ୍ଗ ଅଲିଙ୍ଗ ପ୍ରଧାନ,
ନାହିଁ ତହିଁ ମନ ବୁଦ୍ଧି ଚିତ୍ତ ଧ୍ୟାନ ।
ନାହିଁ ତହିଁ ସତ୍ତ୍ୱ ରଜ ତମ ଗୁଣ ।
ନାହିଁ ତ ଇନ୍ଦ୍ରିୟ ଦ୍ୱାରମାନ ପୁଣ ।
ନାହିଁ ତହିଁ ସ୍ୱପ୍ନ ଜାଗ୍ରତ ସୁଷୁପ୍ତି,
ନାହିଁ ତହିଁ ଭୁସିୟ ମନ୍ତ୍ରଣା ବା ଗୁପ୍ତି ।"

ଏହି ପ୍ରକାଶିତ ଲେଖା ପ୍ରସଙ୍ଗରେ ରତ୍ନାକର ପତି ଲେଖିଛନ୍ତି—

"This portion of the poem of the Sadhu was translated into Oriya from Hindi version by the late Vyasakavi Sri Fakirmohan Senapati and published in his poetical work 'Abasara Basare' in the year 1908. The other works of the Mahatma such as 'Malikas' (Prophetic versions), different philosophical discourses on various subjects and many other manuscript records and life anecdotes and judicial records still remain unpublished due to the death of revered Fakirmohan. Those records etc. were given to Fakirmohan by late Sri Shyam

Digitized by PPRACHIN, SOA

Sundar Sahu, retired government treasurer and head cashier in P. W. D. after thorough discussion for publication. This Shyama Sudar Sahu died at the age of 93 in the year 1939. He was one of the disciples of the Sadhu. Lala Nagendra Kumar Ray late editor of 'Nirbhik', Calcutta and of 'Desh Katha' Cuttack, wrote 60 Pages of poetry in 1924 about Sadhu Sundar Das from Malikas 'and Hindu records still remaining unpublished."

(Kujibar Publication—Pamphlet—No. 8. P 7)

ସାଧୁ ସୁନ୍ଦର ଲେଖିଯାଇଥିବା କିଛି ପାଣ୍ଡୁଲିପି ତାଙ୍କର ଶିଷ୍ୟ ଶ୍ୟାମସୁନ୍ଦର ସାହୁ ସଂଗ୍ରହ କରି ଫକୀରମୋହନଙ୍କୁ ଅର୍ପଣ କରିଥିଲେ ପ୍ରକାଶ କରିବାପାଇଁ । ଫକୀରମୋହନଙ୍କ ଜୀବତ କାଳରେ ତାହା ପ୍ରକାଶିତ ହୋଇ ନଥିଲା ଏବଂ ତାଙ୍କର ଅବର୍ତ୍ତମାନରେ ସେହି ଲେଖାଗୁଡ଼ିକ ଆଜି ପର୍ଯ୍ୟନ୍ତ ଉଦ୍ଧାର କରାଯାଇ ପାରିନାହିଁ । ସେହିପରି 'ଦେଶକଥା'ର ସମ୍ପାଦକ ଲଲ ନଗେନ୍ଦ୍ର କୁମାର ରାୟ ସାଧୁ ସୁନ୍ଦରଙ୍କ ବିଷୟରେ ମାଳିକା ଆଶ୍ରୟରେ ଷାଠିଏ ପୃଷ୍ଠାର ଏକ କବିତା ପ୍ରଣୟନ କରିଥିଲେ । ତାହା ମଧ୍ୟ ଲୋକଲୋଚନ ଅଗୋଚରରେ ରହିଗଲା ।

## ଅବିସ୍ମରଣୀୟ ସାଧୁ ସୁନ୍ଦର

ଓଡ଼ିଆ ସାହିତ୍ୟର ଦୁର୍ଭାଗ୍ୟ ଯେ ସାଧୁ ସୁନ୍ଦରଙ୍କ ରଚନାବଳୀ ଉଦ୍ଧାର ହୋଇ ପାରିଲା ନାହିଁ । ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଏବଂ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସାଧୁ ସୁନ୍ଦରଙ୍କ ଲେଖାବଳୀ ଓଡ଼ିଶାରେ ଧର୍ମ ଆନ୍ଦୋଳନ ଏବଂ ନବଜାଗରଣ ଯୁଗର ପ୍ରାମାଣିକ ଦଲିଲ ଭାବରେ ସ୍ୱୀକୃତି ଲାଭ କରିଆନ୍ତା । ଓଡ଼ିଶାର ରାଜନୈତିକ ଓ ସାମାଜିକ ଜୀବନର ଏକ ଦାରୁଣ ସଙ୍କଟ କାଳରେ ଏକ ସଂସ୍କାରକ

Digitized by PPRACHIN, SOA

ସାଧୁ ସୁନ୍ଦରଙ୍କର ଆବିର୍ଭାବ ଏବଂ ଧର୍ମପ୍ରଗୃର ଏକ ମହାନ ଐତିହାସିକ ଘଟଣା କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଶାର ସାଂସ୍କୃତିକ ଇତିହାସରେ ସାଧୁ ସୁନ୍ଦରଙ୍କର ସ୍ମୃତି ଅମରାକ୍ଷରରେ ଲିପିବଦ୍ଧ ହୋଇ ରହିଥିବ କାଳକାଳକୁ ।

ପୂର୍ବତନ ଅଧ୍ୟକ୍ଷ
ଖ୍ରୀଷ୍ଟ କଲେଜ, କଟକ

## ସହାୟକ ସୂଚନାପଞ୍ଜୀ


1. Orissa—by Lax ni Narayana Sahu—194?.
2. Kujibar Publication, Pamphlet– No. 7.
   ମହାତ୍ମା ସାଧୁ ସୁନ୍ଦର ଦାସ - ଡାକ୍ତର କୃଷ୍ଣମୋହନ ସାହୁ ।
3. Kujibar Publication, Pamphlet, No. 8.
   Mahatma Sadhu Sundar Das's Advaitism or Absolute Brahmo, by Ratnakar Pati—1950.
4. Orissa and its Evangelization, by
   Amos Sutton, D. D—Missionary to Orissa—1850.
5. ସାଧୁ ସୁନ୍ଦର ଦାସ ଓ କୁଜାବର—ମମତା ବେଶୋଇ, ଏମ୍. ଏ— କୋଣାର୍କ—୫୭ ସଂଖ୍ୟା—୧୯୮୫ ।
6. ସାଧୁ ସୁନ୍ଦର ଦାସ; ଜୀବନ ଓ ସାଧନା—ଶ୍ରୀମତୀ ଲାବଣ୍ୟ ନାୟକ— ଝଙ୍କାର—୩୧ଶ ବର୍ଷ—୧୦ମ ସଂଖ୍ୟା ।
7. କଟକ ପରମାର୍ଥ ବିଦ୍ୟାଳୟର ସଂକ୍ଷିପ୍ତ ଇତିହାସ—ରେଭରେଣ୍ଡ ହୃଦୟଚନ୍ଦ୍ର ନନ୍ଦ—Souvenir—1995– United Theological School, Cuttack.
8. ଊନବିଂଶ ଶତାବ୍ଦୀର ଓଡ଼ିଶାରେ ଧର୍ମ ସଂସ୍କାର ଆନ୍ଦୋଳନ ଓ ସାଧୁ ସୁନ୍ଦର ଦାସ—ଡଃ କୈଳାଶ ଚନ୍ଦ୍ର ସିଂହ ।




Digitized by PPRACHIN, SOA

# ଯୁଗଜ୍ୟୋତି ସାଧୁ ସୁନ୍ଦର ଦାସ

ଶ୍ରୀ କ୍ଷୀରୋଦଚନ୍ଦ୍ର ବିଶ୍ୱାଳ

[ ଲେଖକ ହେଉଛନ୍ତି ସାଧୁଙ୍କର ପଞ୍ଚମହାଶିଷ୍ୟଙ୍କ ମଧ୍ୟରୁ ଏକତମ ମାଧବ ବିଶ୍ୱାଳଙ୍କ ଅଣନାତି ବା ଚତୁର୍ଥ ପୁରୁଷ । ତାହାଙ୍କର ଅଜା ବିନ (ବିନୋଦ) ବିଶ୍ୱାଳ ଓରଫ ଭଗବାନ ଦାସ ଥିଲେ କୁଳାବର ଗ୍ରାମର ଅଧିବାସୀ ତଥା ସାଧୁ ସୁନ୍ଦରଙ୍କ ଆଦର୍ଶର ଅନୁଗାମୀ । ସେ ୧୦୪ ବର୍ଷ ବୟସ ୧୯୪୭ ମସିହାରେ ଦେହତ୍ୟାଗ କରିଥିଲେ । ମଠ ନିକଟବର୍ତ୍ତୀ ସ୍ଥାନରେ ତାଙ୍କୁ ସମାଧି ଦିଆଯାଇଛି । ଲେଖକ କ୍ଷୀରୋଦଚନ୍ଦ୍ର ତଥା ତାଙ୍କର ବଂଶଧରମାନେ ସାଧୁ ସୁନ୍ଦରଙ୍କୁ ନିଜର କୁଳ ଦେବତା ରୂପେ ମାନନ୍ତି ଏବଂ ତାଙ୍କ ଗୃହ-ପରିସରରେ ଥିବା ପୋଥିଘରେ ଏବେ ମଧ୍ୟ ସାଧୁ ସୁନ୍ଦରଙ୍କର ଫଟୋ ରଖି ପୂଜା କରୁଛନ୍ତି । —ସମ୍ପାଦକ ].

ଏକ ସନ୍ଧିସନ୍ଧି ମୁହୂର୍ତ୍ତରେ ଜନ୍ମଗ୍ରହଣ କରିଥିଲେ ଈଶ୍ବର ପ୍ରେରିତ ଦୂତ ମହାତ୍ମା ସାଧୁ ସୁନ୍ଦର ଦାସ, କଟକ ନିକଟସ୍ଥ ଚଉଦ୍ୱାର-ଆଠଗଡ଼ ସୀମା ମଧ୍ୟରେ ୧୭୬୦ ଖ୍ରୀଷ୍ଟାବ୍ଦରେ ଷଣ୍ଢପୁ ପାଇକ କୂଳରେ ପିତା ଇନ୍ଦ୍ରମଣି ପାଇକରାୟଙ୍କ ଔରସରେ, ମାତା କୁମୁଦିନୀଙ୍କ ଗର୍ଭରେ । ବାଲ୍ୟକାଳରୁ ପିତା ମାତା ଇହଧାମ ପରିତ୍ୟାଗ କଲେ । ପାଳନ ଲାଳନ କଲେ ଜ୍ୟେଷ୍ଠ ପିତା । ସେ ସମୟରେ ନିୟମ ଅନୁସାରେ ରାଜାମାନଙ୍କର ଆଦେଶ ଥିଲା ବିଦ୍ୟା ସହିତ ଅସ୍ତ୍ର, ଶସ୍ତ୍ର ଅଶ୍ୱଗଜ ଚାଳନା ଇତ୍ୟାଦି ଯୁଦ୍ଧବିଦ୍ୟା ଶିକ୍ଷାକରିବା । ସମସ୍ତ ଗୁଣରେ ପରିପୂର୍ଣ୍ଣ ଥିଲେ ସାଧୁ ସୁନ୍ଦର । ଏହି ସମ୍ବାଦ ପାଇ ଆଠଗଡ଼ ମହାରାଜା ଡକାଇ ନେଇ ସାଧୁ ସୁନ୍ଦରଙ୍କୁ ସେନାପତି ପଦରେ ଅଳଂକୃତ କଲେ । କିନ୍ତୁ ସାଧୁ ସୁନ୍ଦର ଥିଲେ ଉଦାର ହୃଦୟ, ଅହିଂସାବାଦୀ, ଚିନ୍ତାଶୀଳ, ଦୟାବନ୍ତ, ଗୌତମ ବୁଦ୍ଧଙ୍କ ସଦୃଶ । ଅନ୍ତରରେ ଲୁଚି ରହିଥିଲା

Digitized by PPRACHIN, SOA

ଅସରନ୍ତି ଚିନ୍ତା । ପିଲାଦିନର ଧୂଳିଧୂସର ସାଥିଙ୍କ ଦୁଃଖ, ମାନବ ସମାଜର ରୋଗ, ଦୁଃଖ ଶୋକ, ହିଂସା, ବାଦ, ଭେଦାଭେଦ ଅସୀମ ଦୁର୍ଗତି, ଜୀବହତ୍ୟା ସାଧୁଙ୍କ ହୃଦୟକୁ ବିଚଳିତ କରି ପକାଉଥିଲା ।

ଗୌତମଙ୍କ ପରି ଦିନେ ନିଶାର୍ଦ୍ଧରେ ରାଜପ୍ରାସାଦ ତ୍ୟାଗ କରି ସାଧୁ ସୁନ୍ଦର ପଳାଇ ଗଲେ କେଉଁ ଅରଣ୍ୟ ପଥରେ । ସବୁ ତ୍ୟାଗ କରି ଗୋଟିଏ ଧନୁଶର ଓ କଟିରେ କଉପୀନ ଧାରଣ କରି ପଳାୟନ କଲେ । ସୁମହତ ଉଦ୍ଦେଶ୍ୟ ହେଉଛି ପ୍ରଭୁଙ୍କ ଦର୍ଶନ ଓ ଦିବ୍ୟଜ୍ଞାନ ଲାଭ । ବହୁ ପଥ ଭ୍ରମି ଭ୍ରମି ପଥଶ୍ରମ, କ୍ଷୁଧା ପିପାସାରେ କ୍ଳାନ୍ତ ହୋଇ ଗୋଟିଏ ଝରଣା କୂଳ ତରୁତଳେ ବସିପଡ଼ିଲେ । ସହସା ସେହିପଥ ଦେଇ ଫେରୁଥିଲେ କେତେକ ଆଦିବାସୀ ଲଳନା ଅରଣ୍ୟଜାତ ଦ୍ରବ୍ୟ ମହୁ, ମହୁଲ, ଫଳମୂଳ, କେନ୍ଦୁ, କେନ୍ଦୁପତ୍ର, ଶାଳପତ୍ର ଇତ୍ୟାଦି ସହ । ସହସା ସେମାନେ ଦେଖିଲେ, ତରୁତଳେ ଏକ ଶାନ୍ତ, ପ୍ରଶାନ୍ତ ଦେବ ପ୍ରତିମା, ଅପରିଚିତ ସନ୍ନ୍ୟାସୀ ।

ସାହସୀ ଆଦିବାସୀ ମହିଳା ସାଧୁଙ୍କ ନିକଟକୁ ଗଲେ ଓ ଅତି ଆନନ୍ଦରେ ନମ୍ର ଚିତ୍ତରେ ପ୍ରଣିପାତ କଲେ, କ୍ଷୁଧାର୍ତ୍ତ ସାଧୁଙ୍କୁ କିଛି ମଧୁର ଫଳ ପ୍ରଦାନ କଲେ । ଆନନ୍ଦରେ ଭୋଜନ କରି ଜଳ ପାନ କଲେ ସାଧୁ । ସରଳା ଲଳନାଙ୍କୁ ଶୁଭାଶୀର୍ବାଦ ପ୍ରଦାନ କଲେ ଓ ପୁନର୍ବାର ପ୍ରତ୍ୟାବର୍ତ୍ତନ କଲେ ସେହି ଅରଣ୍ୟ ପଥର ପ୍ରାଚୀମୁଖରେ । ପ୍ରବେଶ ହେଲେ କପିଳାସ ଅରଣ୍ୟର ଦକ୍ଷିଣ ନର୍ଝର କୂଳେ । ଝରଣାଟି ବହିଯାଉଥିଲା କ୍ଷୁଦ୍ର ନଦୀଟିଏ ହୋଇ । ପ୍ରାଚୀରୁ ଦକ୍ଷିଣାଭିମୁଖୀ ହୋଇ ଚାଲିଲେ ସାଧୁ ତାର ତଟରେ ତଟରେ । ପ୍ରବେଶ କଲେ ଯୋଡ଼ା (ଡାଳିଯୋଡ଼ା) ମଧ୍ୟରେ । ଅନତି ଦୂରରେ ତାଙ୍କ ଦୃଷ୍ଟିପଥରେ ପଡ଼ିଲା ମୃଗଟିଏ । କ୍ଷୁଧା ଆତୁରରେ ମତିଭ୍ରମ ଘଟିଲା ତାହାଙ୍କର । ଶରଟିଏ ନିକ୍ଷେପିଲେ ମୃଗ ଉପରକୁ । ମୃଗଟି ଅଦୃଶ୍ୟ ହୋଇଗଲା, ସେଥିପଶ୍ଚାତ ଶୂନ୍ୟବାଣୀ ହେଲା, ଯଥା ବାଗଦାଦ ଠାରେ ସାଧୁ ପେଣ୍ଟ ପଲଙ୍କ ଭାଗ୍ୟରେ ଘଟିଥିଲା । "ହେ ଅହିଂସା ପଥର ଯାତ୍ରୀ, ତପସ୍ୟା ବଳରେ

Digitized by PPRACHIN, SOA

ଦିବ୍ୟଜ୍ଞାନ ଲାଭ କରି ସୁପଥଗାମୀ ହୁଅ ।" ହିଁ ଥିଲେ ଗଜପତିଙ୍କ ରୂପଧାରୀ ଥିଲେ ସାଧୁ ସୁନ୍ଦର ।

ଧନୁଦ୍ଧର ତ୍ୟାଗ କରି ସାଧୁ ଚାଲିଲେ ଗନ୍ଧମାର୍ଦ୍ଦ ଘାଟରେ ଘାଟରେ । ପ୍ରବେଶ ହେଲେ ବିରାଟ ବଟବୃକ୍ଷ, ଓହଳ ବେଷ୍ଟିତ କୁଞ୍ଜବର ତଳୁ-ତଳେ । ସେହିଠାରେ ଆରମ୍ଭ ହେଲା ମହାଯୋଗୀଙ୍କର ତପସ୍ୟା ସମାଧି । ପ୍ରାତଃ କାଳରୁ ଗନ୍ଧ-ଗଣ୍ଡାଳରେ ସ୍ନାନ ସାରି ଭୋଜନ କେବଳ ବିଲ୍ୱ ପତ୍ର, ତୁଳସୀପତ୍ର ସହ ସ୍ୱଚ୍ଛ ଜଳ । ଏହିପରି ଦିନ ବିତିଗଲା ୫ବରଷ । କିଏ ବା ତାଙ୍କୁ ଦେଖିବ ? ସେ କାଳରେ ସ୍ଥାନଟି ଥିଲା ଅରଣ୍ୟରେ ପୂର୍ଣ୍ଣ । ପ୍ରଭୁଙ୍କର ଦୟା ଆଶୀର୍ବାଦ ହେଲା । ସିଦ୍ଧ ପାଇଲେ ହେବ ଅକ୍ଷୟ ତୃଷ୍ଣାପୂ ।

ମହା ତପସ୍ୱୀଙ୍କର ଭାଙ୍ଗିଗଲା ଧ୍ୟାନ । ଆନନ୍ଦରେ ଆତ୍ମହରା ହୋଇ ନିରୀକ୍ଷଣ କଲେ ଚତୁର୍ଦ୍ଦିଗକୁ । ଅଳ୍ପ ଦୂରରେ ଦୃଷ୍ଟିଗୋଚର ହେଲା, ଦୁଇ ଜଣ ଲୋକ ବାଉଁଶ ବଡା କାଟିବାରେ ବ୍ୟସ୍ତ । ଇଙ୍ଗିତରେ ଡାକଲେ ପାଖକୁ । ଅତି ଆଶ୍ଚର୍ଯ୍ୟ ଲାଗିଲା ଦୁଇ ଜଣଙ୍କୁ । ତଥାପି ପାଖକୁ ଯାଇ ଦେଖିଲେ, ଶାନ୍ତ ସୌମ୍ୟ ମୂରତି, ପୁଣି ମହା ସନ୍ୟାସୀ । ଅତି ବିନମ୍ର ଭାବରେ ଚରଣ ବନ୍ଦନା କଲେ । ବହୁ ଦିନରୁ କ୍ଷୁଧାର୍ତ୍ତ, ସହଜେ ପାରଣା ସମୟ । ପଚାରିଲେ, "ଖାଦ୍ୟ କିଛି ଆଣିଛ କି ?"

ଲୋକ ଦୁଇଟି ଅତି ଆନନ୍ଦରେ କୃତ୍ୟ କୃତ୍ୟ ହୋଇ ନେଇ-ଥିବା ଖାଦ୍ୟ ଯଥା, ଚାଉଳର ଛତୁଆ, ଗୁଡ଼, ଲୁଣ, ଲଙ୍କା ଇତ୍ୟାଦି ଥୋଇଦେଲେ ଶ୍ରୀଚରଣ ତଳେ । ସାଧୁଙ୍କ ନିର୍ଦ୍ଦେଶରେ ଏକତ୍ର ବସି ଭୋଜନ କଲେ ସକଳେ । ପରିଚୟ ପଚାରିବା ପୂର୍ବରୁ ଶୁଣିଲେ ନବ ସନ୍ନ୍ୟାସୀଙ୍କ ମୁଖରୁ ଦିବ୍ୟ ମଧୁମୟ ବାଣୀ । ସେହି ଦିବ୍ୟଜ୍ଞାନ ଶ୍ରବଣ ପରେ ଘରକୁ ଫେରିଯିବା କଥା ପାଶୋରି ପକାଇଲେ । ସେତେବେଳେ ରାସ୍ତା ଘାଟ, ଯାନ ବାହନ ନଥିଲା, ଥିଲା ଶଗଡ଼ରେ, ଡଙ୍ଗାରେ, ଜିନିଷପତ୍ର ନେବା ଆଣିବା । କଟକ ସହିତ ଉତ୍ତରାଞ୍ଚଳର ବ୍ୟବସାୟ ଚାଲିଥିଲା । କଟକ ବକ୍ସି ବଜାରର ମହାଜନ ରାମଚନ୍ଦ୍ର ସାହୁ କାଠ

※

Digitized by PPRACHIN, SOA

ବାଉଁଶ, ବତା, ଲଇ, ଆମ୍ବ, ମହୁଲ, ମହୁ, ଝୁଣା, ଇତ୍ୟାଦି ଜଙ୍ଗଲ-ଜାତ ଦ୍ରବ୍ୟ ଶଗଡ଼ରେ ନେଇ ଓଡ଼ାଦ୍ୱାର କଟକ ନଗରରେ ବିକ୍ରୟ କରନ୍ତି । ଯୋଗକୁ ସାଧୁଙ୍କ ସହିତ ସାକ୍ଷାତ ହେଲା । ଉକ୍ତ ତିନିଜଣ ପ୍ରଥମେ ସାଧୁଙ୍କର ଶିଷ୍ୟ ହେଲେ । ତା'ପରେ ପଞ୍ଚ ମହାଶିଷ୍ୟ, ତା'ପରେ ଦ୍ୱାଦଶ ଶିଷ୍ୟ, ଶେଷରେ ପାଞ୍ଚ ସହସ୍ର ଶିଷ୍ୟ ତାଙ୍କଠାରୁ ଦୀକ୍ଷା ଗ୍ରହଣ କଲେ । ସେହି ପାଞ୍ଚ ମହାଶିଷ୍ୟ ହେଉଛନ୍ତି—

(୧) ରାମଚନ୍ଦ୍ର ସାହୁ, କଟକ, (୨) ମାଧବ ବଶ୍ୱାଳ, କୁଜାବର, (୩) ରାମଚନ୍ଦ୍ର ପଣ୍ଡା, ଜାଜଭୈରବ (୪) ଗଙ୍ଗାଧର ଷଡ଼ଙ୍ଗୀ, ଟାଙ୍ଗୀ, (୫) ରାମଚନ୍ଦ୍ର ଝା ଯାଚକ, ଶାଳଗାଁ (କଟକ) ।

## ସାଧୁଙ୍କର ଧର୍ମ : ଏକେଶ୍ୱରବାଦ

ସର୍ବଧର୍ମ ସମନ୍ୱୟର ପ୍ରତିଷ୍ଠାତା ସାଧୁ ପ୍ରଚାର କରୁଥିଲେ — "ଏକ-ଈଶ୍ୱରଙ୍କର ସକଳ ମାନବ ଜାତି ସନ୍ତାନ ଅଟନ୍ତି । ସମସ୍ତେ ସମସ୍ତଙ୍କର ଅତି ଆପଣାର ସଖା ବନ୍ଧୁ ସହୋଦର । ନୀଚ ଉଚ୍ଚ ଭେଦା-ଭେଦ, ରାଗ, ତମ, ବାଦବିବାଦ, ଜୀବ ହତ୍ୟା ମହାପାପ । ଦୀନ, ଅସହାୟ, ଦୁଃସ୍ଥ, ରୋଗୀ, ଶୋଷିତ ଲୋକ ପ୍ରଭୃତିଙ୍କର ସେବା ହେଉଛି ଈଶ୍ୱରଙ୍କ ସେବା । ସେଥିରେହିଁ ଈଶ୍ୱର ପ୍ରାପ୍ତି । ଈଶ୍ୱର ସଦା ସର୍ବଦା ତୁମ୍ଭମାନଙ୍କ ପାଖେ ପାଖେ ଅଛନ୍ତି ।"

ସାଧୁଙ୍କର ଅତି ସୁମହତ କାର୍ଯ୍ୟ ହେଉଛି, ଓଡ଼ିଶାର ଜାତୀୟ ଭାଷାର ସର୍ବପ୍ରଥମ ପତ୍ର କୁଜାବରପତ୍ରର ପ୍ରଚାର । ଯେତେବେଳେ ପଡ଼ୋଶୀ ରାଜ୍ୟବାସୀ ପ୍ରାଣମୂର୍ଚ୍ଛା ଉଦ୍ୟମ ଚଳାଇଥାନ୍ତି ଓଡ଼ିଶା ଓ ଓଡ଼ିଆ ଭାଷାକୁ ଲୋପ କରିଦେବାକୁ, ସେହି ସଙ୍କଟସନ୍ଧି ମୁହୂର୍ତ୍ତରେ ଲେଖନ ତାଳପତ୍ର ଧରିଲେ ସାଧୁ ସୁନ୍ଦର ଓ ତାଙ୍କ ଶିଷ୍ୟମଣ୍ଡଳୀ । ସେ ବେଳରେ ମୁଦ୍ରାଯନ୍ତ୍ର ଓଡ଼ିଶାରେ ନଥିଲା । ସେକାଳର ମୁଦ୍ରାଯନ୍ତ୍ର ହେଉଛି ଲେଖନ ଓ ତାଳପତ୍ର । ଏଥିରେ ଲେଖିବା ବହୁ କଷ୍ଟସାଧ୍ୟ ଓ ବହୁ ସମୟସାପେକ୍ଷ ।

Digitized by PPRACHIN, SOA

ସେ ଏହି ପତ୍ରିକାକୁ ରାଜ୍ୟ, ଦେଶ ବିଦେଶ ତଥା ଲଣ୍ଡନ ପର୍ଯ୍ୟନ୍ତ ପଠାଇ ପାରୁଥିଲେ । ଲଣ୍ଡନ ମିଉଜିୟମରେ ଏବେ ବହୁ କୁଞ୍ଜବର ପତ୍ର ସୁରକ୍ଷିତ । ସେହି ପତ୍ରିକାକୁ ପାଠକରି ପାଦ୍ରୀମାନେ ଅତି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ଦ୍ୱିତୀୟ ଯୀଶୁ ଓଡ଼ିଶାରେ ଜନ୍ମ ହୋଇଛନ୍ତି ବୋଲି ପାଦ୍ରୀମାନେ ବହୁ ରିପୋର୍ଟମାନ ଲେଖି ଯାଇଛନ୍ତି । ସଟନ୍ ସାହେବ, ଲେସି ସାହେବ ଓ ଉଇଲିୟମସନ୍ ସାହେବ ଇତ୍ୟାଦି ।

ସେ ବେଳର ସମାଜକୁ ସୁପଥଗାମୀ କରାଇବା ନିମନ୍ତେ କୁଞ୍ଜବରଠାରେ ପୁଷ୍ପଗିରି ପରି ଏକ ମହାନ୍ ବୈଦାନ୍ତିକ ବନ-ବିଦ୍ୟାଳୟ ସେ ସ୍ଥାପନ କରିଥିଲେ । ପିଲାମାନଙ୍କର ଖାଇବା ପିଇବା, ରହିବା, ବସ୍ତ୍ର, ଶିକ୍ଷାଦାନ ସମସ୍ତ ନିଜ ଶିଷ୍ୟମାନଙ୍କ ଗହଣରେ ସେ ବୁଝୁଥିଲେ । ଖାଦ୍ୟ ଓ ଅନ୍ନ ବସ୍ତ୍ର ପାଇଁ କୃଷି, ଗୋ-ପାଳନ, ବୃକ୍ଷ ରୋପଣରୁ କୁଟୀର ଶିଳ୍ପ, ସ୍ୱାସ୍ଥ୍ୟ, ସମାଜ ଗଠନ, କଲ୍ୟାଣ ଇତ୍ୟାଦି ଶିକ୍ଷା ଦିଆ ଯାଉଥିଲା । ସତ୍‌ଚିନ୍ତା, ସତ୍‌କର୍ମ, ସରଳ ଜୀବନଯାପନ ବିଦ୍ୟା ସହିତ ଚର୍ଚ୍ଚା ହେଉଥିଲା । ଆଜି ସେ କୁଞ୍ଜବର ବୈଦାନ୍ତିକ ବନବିଦ୍ୟାଳୟ ନାହିଁ । ଅଛନ୍ତି ଜୀର୍ଣ୍ଣ ପଞ୍ଚମୁଖୀ ଦେଉଳରେ ସମାଧିସ୍ଥ ସାଧୁ ସୁନ୍ଦର । ୧୮୩୮ ମସିହା ବୈଶାଖ ଆଦ୍ୟ କୃଷ୍ଣ ୭ମୀ ଦିନ ନେଇଥିଲେ ଜୀବନ୍ତ ସମାଧି । ଭଗ୍ନ ପଞ୍ଚମୁଖୀ ଦେଉଳରେ ବସି ଅଶ୍ରୁ ଢାଳୁଛନ୍ତି ମୋର ସାଧୁ ସୁନ୍ଦର, ଯେ ଥିଲେ ଏ ଜାତିର କର୍ଣ୍ଣଧାର, ଧର୍ମପ୍ରଚାରକ, ସଂସ୍କାରକ, ଏକାଧାରରେ ଲେଖକ, ସାମ୍ବାଦିକ, ଦାର୍ଶନିକ, ମହାଯୋଗୀ,ସାଧକ, ଆଜନ୍ମ ବ୍ରହ୍ମଚାରୀ ଓ ସମାଜ ସେବକ । ଓଡ଼ିଶାର କ୍ୱଚିତ ଶିକ୍ଷାବିତ୍ ସାଧୁଙ୍କ ବିଷୟରେ ଆଲୋକପାତ କରିଛନ୍ତି ।

ଆଜକୁ ୨୦୦ ବର୍ଷରୁ ଅଧିକ ହେବ ସାଧୁଙ୍କର ୨ ଗୋଟି ଯଜ୍ଞ, ପ୍ରଥମ ଯଜ୍ଞ ବୈଶାଖ ଆଦ୍ୟ କୃଷ୍ଣ ସପ୍ତମୀ,୨ୟ ଯଜ୍ଞ ଅକ୍ଷୟତୃତୀୟା ଦିନ ହୋଇ ଆସୁଅଛି । ଏହି ମହତ ଅନୁଷ୍ଠାନକୁ ବଞ୍ଚାଇ ରଖି ଆସିଛନ୍ତି ପବିତ୍ର କଟକ ନଗରବାସୀ, ବିଶେଷ କରି କଟକ ବକ୍‌ସି ବଜାର ସାହୁ ବଂଶଧରମାନେ ଏଥିରେ ଓତପ୍ରୋତ ଭାବେ ଜଡ଼ିତ । ସାହୁ ବଂଶଧର-

Digitized by PPRACHIN, SOA

ମାନଙ୍କର ଅତୁଳ ଦାନ ଫଳରେ ମନ୍ଦିର ରକ୍ଷଣାବେକ୍ଷଣ, ସେବା ପୂଜା, ଯଜ୍ଞକାର୍ଯ୍ୟ, ଅତିଥିମାନଙ୍କୁ ଶାକାନ୍ନ (ଅଭଡ଼ା) ଦାନ, ଅନ୍ନଛତ୍ର, ପଂକ୍ତି ଭୋଜନ ଇତ୍ୟାଦି ମହା ଆନନ୍ଦରେ ହୋଇ ଆସୁଅଛି । ସେମାନେ ରାମଚନ୍ଦ୍ର ସାହୁଙ୍କର ବଂଶଧର । ରାମଚନ୍ଦ୍ର ସାହୁଙ୍କର ପୁତ୍ର କନ୍ୟା ପାର୍ଵତୀନ ନଥିଲେ । ସାଧୁ ସୁନ୍ଦର, ସାହୁଙ୍କର ପ୍ରଥମପୁତ୍ର (ଧର୍ମପୁତ୍ର) ଓ ସାଧୁଙ୍କ ଶୁଭାଶୀର୍ବାଦରେ ବୃଦ୍ଧ ସାହୁ ଛ'ଗୋଟି ସନ୍ତାନ ଲାଭ କରିଥିଲେ । ଏବେ ସେମାନେ ବହୁ ପରିବାରରେ ବିଭକ୍ତ । ତାହାଙ୍କର ଦାନ ଅତୁଟ ରହିଛି ।

ମାଧବ ବିଶ୍ୱାଳ କୁଞ୍ଜବରବାସୀ ହୋଇଥିବାରୁ ସାଧୁଙ୍କର ଖାଦ୍ୟପେୟ, ଶୟନ ବ୍ୟବସ୍ଥା କୁଞ୍ଜବର ମଠରେ ବୁଝୁଥିଲେ । ସାଧୁ କହି ଯାଇଥିଲେ "ଯେପରି ବୁଝୁଛ, ସେହିପରି ତୋର ବଂଶଧରମାନେ ଖାଦ୍ୟ ସାମଗ୍ରୀ ମୋତେ ଦେଇ ସେମାନେ ଭୁଞ୍ଜିବେ । କଳସ ଧାନ ସହିତ ଯଜ୍ଞର ଚରୁରେ ତୋର ଭାଗ ରହିଲ ।" ଏବେ ମଧ୍ୟ ତାହା ବଂଶାନୁକ୍ରମେ ଚାଲିଅଛି ।

ଶିଷ୍ୟ ରାମଚନ୍ଦ୍ର ପଣ୍ଡାଙ୍କୁ କାଳଭୈରବ ଯଜ୍ଞର ଭଲ ମନ୍ଦ ବୁଝିବା ସହିତ ଯଜ୍ଞର କର୍ତ୍ତା ଦାୟିତ୍ୱ ଅର୍ପଣ କରିଯାଇଥିଲେ । ତାହା ମଧ୍ୟ ସେମାନେ ପୁରୁଷାନୁକ୍ରମେ କରି ଆସୁଛନ୍ତି । ଅତି ସୁଖର କଥା ଅନତିଦୂରରେ ସାଧୁଙ୍କ ନାମରେ ସାଧୁ ସୁନ୍ଦର ବିଦ୍ୟାପୀଠ ସ୍ଥାପିତ ହୋଇ ତାଙ୍କର ସ୍ମୃତିଚାରଣ କରୁଅଛି ।

ସାଧୁ ଏହି ଭୃତ୍ୟ ଶିଷ୍ୟଙ୍କର ବଂଶକୁ ଶୁଭାଶୀର୍ବାଦ ଢାଳିଦେଇ ଯାଇଛନ୍ତି । ସେ କହିଯାଇଥିଲେ "ଅପଥ, ଅକର୍ମ, ଅସତ୍‌ପଥରେ କେବେହେଲେ ଗତି କରିବ ନାହିଁ ।" ଗୁରୁଦେବ ଜୀବିତ, ମୃତ ନୁହଁନ୍ତି । ସେ ସମସ୍ତଙ୍କ କାର୍ଯ୍ୟ କଳାପ ଦେଖି ପାରୁଛନ୍ତି ।



Digitized by PPRACHIN, SOA

# ଶିଷ୍ୟ ରାମଚନ୍ଦ୍ରଙ୍କୁ
# ଗୁରୁ ସାଧୁ ସୁନ୍ଦରଙ୍କ ଉପଦେଶ

ଅନୁବାଦ : **ଅଧ୍ୟାପକ ଚନ୍ଦ୍ରଶେଖର ମହାପାତ୍ର**

[ ସୁନ୍ଦର ଦାସଙ୍କର ଯେଉଁ ପାଞ୍ଚଜଣ ପ୍ରଧାନ ଶିଷ୍ୟଙ୍କୁ 'ପଞ୍ଚ ମହାଶିଷ୍ୟ' ବୋଲି କୁହାଯାଏ, ସେମାନଙ୍କ ମଧ୍ୟରେ ରାମଚନ୍ଦ୍ର ଜୀ ଯାଚକ ଥିଲେ ଏକତମ । ସେ ସାଧୁଙ୍କ ନିକଟରେ ବର୍ଷ ବର୍ଷ ଧରି ରହି ତାଙ୍କର ସେବା କରି ଓ ତାଙ୍କଠାରୁ ଉପଦେଶ ବାଣୀ ଶ୍ରବଣ କରି ଶେଷରେ ଖ୍ରୀଷ୍ଟଧର୍ମ ପ୍ରତି ଆକୃଷ୍ଟ ହୋଇ ଢଳି-ଯାଇଥିଲେ । ସ୍ୱର୍ଗତ ଜୟାନନ୍ଦ ସିଂଙ୍କ କୃତ 'କେତେକ ଆଦ୍ୟ ଖ୍ରୀଷ୍ଟିୟାନଙ୍କ ଜୀବନୀ' ପୁସ୍ତକରେ ତାହାଙ୍କର ଧର୍ମ-ଜୀବନର ପରିଚୟ ଦେବାକୁ ଯାଇ କୁହା-ଯାଇଛି ଯେ ସେ ଅଠର ବର୍ଷ ବୟସରେ ବିବାହ କରିଥିଲେ ଓ ୨୭ ବର୍ଷ ବୟସ ବେଳକୁ ସୁନ୍ଦର ଦାସ ନାମକ କୁଳୀବରର ବାବାଜୀଙ୍କ ପାଖକୁ ଯାଇ ତାଙ୍କୁ ସାକ୍ଷାତ କରିଥିଲେ । ବାବାଜୀଙ୍କର ଯେତେ ଶିଷ୍ୟ ଥିଲେ, ସେମାନଙ୍କ ମଧ୍ୟରେ ନୂତନ ନିୟମ, ପ୍ରଶ୍ନୋତ୍ତର ଓ ନିସ୍ତାର ରତ୍ନାକର ଇତ୍ୟାଦି ପୁସ୍ତକମାନ ପଢ଼ା ଓ ଚର୍ଚ୍ଚା ହେଉଥିଲା । ବାବାଜୀ ଏ ସବୁର ଅର୍ଥ ଉତ୍ତମ ରୂପେ ବୁଝାଇ ଦେଉଥିଲେ । ରାମଚନ୍ଦ୍ର କ୍ରମେ ହିନ୍ଦୁଧର୍ମର ପୌତ୍ତଳିକତା ଓ ଅନ୍ୟାନ୍ୟ ଔପଚାରିକତାକୁ ପରିହାର କରି ଖ୍ରୀଷ୍ଟ ଧର୍ମର ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ଓ ପାଦ୍ରୀ ଲେସି ସାହେବଙ୍କ ସାହାଯ୍ୟରେ ୧୮୨୯ ସାଲ ନଭେମ୍ବର ମାସ ପହିଲି ତାରିଖରେ ବିଧିବଦ୍ଧ ଭାବେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହୋଇଥିଲେ ।

ଓଡ଼ିଶାରେ ଗଙ୍ଗାଧର ଷଡ଼ଙ୍ଗୀଙ୍କ ପରେ ରାମଚନ୍ଦ୍ର ଜୀ ଯାଚକ ହେଉଛନ୍ତି ଦ୍ୱିତୀୟ ଧର୍ମାନ୍ତରିତ ବ୍ୟକ୍ତି । ସେ ଖ୍ରୀଷ୍ଟଧର୍ମ ପ୍ରତି ଆକୃଷ୍ଟ ହେବା ଦିଗରେ ସାଧୁ ସୁନ୍ଦରଙ୍କର ଉଦାର ଧର୍ମମତ ଏବଂ ତାତ୍ତ୍ୱିକ ବ୍ୟାଖ୍ୟାରୁ ପ୍ରେରଣା ଲାଭ କରିଥିଲେ । ସେ ସାଧୁଙ୍କଠାରୁ ଯେଉଁ ଉପଦେଶମାନ ଶ୍ରବଣ କରିଥିଲେ ଏବଂ ସାଧୁ ତାଙ୍କ ଶିଷ୍ୟମାନଙ୍କ ସମ୍ମୁଖରେ ଯେଉଁ ଭବିଷ୍ୟତ ବାଣୀ ଶୁଣାଇଥିଲେ ତାହାର ଏକ ବିବରଣୀ ଆମୋସ ସଟନଙ୍କୁ ଦେଇଥିଲେ । ସଟନ ସାହେବ ୧୮୫୦ ମସିହାରେ ଲଣ୍ଡନରୁ ପ୍ରକାଶିତ ତାଙ୍କ ପୁସ୍ତକ Orissa and its

Digitized by PPRACHIN, SOA

Evangelizationରେ ଏହାକୁ ଉଲ୍ଲେଖ କରିଛନ୍ତି । ପୁସ୍ତକର ସେହି ଅଂଶଟିର ଓଡ଼ିଆ ଅନୁବାଦ ଏଠାରେ ପ୍ରଦାନ କରାଗଲା । - ସମ୍ପାଦକ ]

ସମୟକ୍ରମେ ସୁନ୍ଦର ବାବାଙ୍କ ସହ ମୋର ସାକ୍ଷାତ ହୋଇଥିଲା । ଶାସ୍ତ୍ରଲିପିକୁ ସମ୍ମାନ କରିବା ସମ୍ବନ୍ଧରେ ସେ ମୋତେ ଅନେକ ଉପଦେଶ ଦେଇଥିଲେ । ଦୁଃଖୀ ନାୟକ, ଗଙ୍ଗାଧର ଷଡ଼ଙ୍ଗୀ, ଗଙ୍ଗା ମହାପାତ୍ର, ଜଗନ୍ନାଥ ପଟ୍ଟନାୟକ, ଗଙ୍ଗାଧର ବିଶ୍ୱାଳ, କୃପାସିନ୍ଧୁ ସାହୁ, ରାଧା ଦାଶ, ସୁଦର୍ଶନ ରାଉତ, ରାମକୃଷ୍ଣ ଦାସ, ପରମେଶ୍ୱର ମଲ୍ଲ, ପରଶୁ ମହାପାତ୍ର, କାର୍ତ୍ତିକ ଶିଉଳ (?) ଏବଂ ଆହୁରି ଅନେକ ବ୍ୟକ୍ତି ମଧ୍ୟ ତାଙ୍କ ସହ ନିବିଡ଼ ସମ୍ପର୍କ ରଖିଥିଲେ । ସେ ଆମ୍ଭମାନଙ୍କୁ କହିଲେ "ଯେଉଁ ଉପଦେଶଗୁଡ଼ିକ ମୁଁ ଦେବି, ତୁମ୍ଭେମାନେ ସେସବୁ କଦାପି ଅମାନ୍ୟ କରିବ ନାହିଁ । ପ୍ରତିଦିନ ଦୁଇଥର ସ୍ନାନ, ସୂର୍ଯ୍ୟାଞ୍ଜଳି, ଦିବସର ଦୁଇଥର ସମୟରେ ଭୋଜନ, ଆହାର ଓ ସ୍ୱଳ୍ପ ପରିଶ୍ରମ ପରେ ବିଶ୍ରାମ ଏବଂ ଯେତେବେଳେ ଯାହାମିଳିଲା ଆହାର କରିବା ପାଇଁ ସେ ଉପଦେଶ ଦେଇଥିଲେ । କିନ୍ତୁ ଉଷ୍ଣ ପାନୀୟ, ତମାଖୁ ସେବନ, ମାଛ, ମାଂସ ଓ ତେଲ ଭକ୍ଷଣ ସେ ବାରଣ କରିଥିଲେ । ଅଧୁଆ ଚାଉଳ ଖାଇବାକୁ ଓ ଭୋଜନ ସ୍ଥାନରେ ପାଉଁଶ ଲିପି ଶୁଦ୍ଧ କରିବାକୁ ସେ କହିଥିଲେ ।

ଯଥେଷ୍ଟ ଅଫିମ ଓ ଆରାମଦାୟକ ଲଘୁ ମାଦକ ଦ୍ରବ୍ୟ ସେବନ ଏବଂ ପ୍ରାତଃ ଆହାର ପାଇଁ ତାଙ୍କର ଉପଦେଶ ଥିଲା । ପଶୁ, ପକ୍ଷୀ, ମାଛ ଓ ଅନ୍ୟ ଯେକୌଣସି ସଜୀବ ସୃଷ୍ଟିକୁ ନଷ୍ଟ କରିବା ଏବଂ ବୃକ୍ଷ, ଗୁଳ୍ମଲତା ଇତ୍ୟାଦିକୁ ଛେଦନ କରିବାକୁ ସେ ବାରଣ କରିଥିଲେ । ସମସ୍ତ ସଜୀବ ଆମର ପରି ଏବଂ ସମସ୍ତଙ୍କ ପ୍ରାଣସତ୍ତା ଏକ । କାରଣ, ସମସ୍ତ ଜୀବ ଓ ଜଡ଼ ସୃଷ୍ଟି ମଧ୍ୟରେ ନାରାୟଣ ବିରାଜିତ ।

ମିଥ୍ୟା କହିବା କମ୍ବା ଚୋରି, ବ୍ୟଭିଚାର କରିବା ଏବଂ କ୍ରୋଧୀ, କପଟୀ, ଉଗ୍ର ଓ ଘୃଣ୍ୟ ହେବାକୁ ସେ ବାରଣ କରିଥିଲେ । ପ୍ରତିମା ପୂଜା, ତୀର୍ଥଯାତ୍ରା, ନୈବେଦ୍ୟ ଅର୍ପଣ, ଉପବାସ, ବୈଶିଷ୍ଟ୍ୟ ସୂଚକ ଚିହ୍ନ, ଉପବୀତ ଓ ମାଳା ବର୍ଜ୍ଜନୀୟ ବୋଲି ମଧ୍ୟ ସେ ନିର୍ଦ୍ଦେଶ

Digitized by PPRACHIN, SOA

ଦେଇଥିଲେ । ତାଙ୍କ ମତରେ ସବୁ କିଛି ଈଶ୍ବରମୟ ଏବଂ ସେହି ଈଶ୍ବରଙ୍କୁ ହିଁ ଆରାଧନା କରିବା ଉଚିତ୍ । ଘୃଣାକୁ ଘୃଣ୍ୟଭାବେ ଦମନ କରିବା, ଅପରାଧ ବିଚାରକର ନିଷ୍ଠୁର ଆଦେଶ ଦେବା, ଯେସାକୁ ତେସା ମାଡ ଧରିବା, ଅନ୍ୟର ଅର୍ଥବ୍ୟୟ କରିବା ଏବଂ କାହାଠାରୁ ଅର୍ଥ ଋଣ ନେବା ଇତ୍ୟାଦିକୁ ସେ ବାରଣ କରିଥିଲେ । ସେ କହିଥିଲେ । ସ୍ତ୍ରୀ, ପିଲଙ୍କୁ ନିଜର ଆତ୍ମା ରୂପେ ବିଚାର କରି ସେମାନଙ୍କୁ ପ୍ରେମ କର । ପିତାମାତାମାନଙ୍କୁ ସମ୍ମାନ କର । ବିଶ୍ବାସଭଜନ୍ମାଇ କାହାରି ଜିନିଷ ନେଇ ଯାଅନାହିଁ, ମିଥ୍ୟା ସାକ୍ଷ ଦିଅନାହିଁ, ଚୋରି ଓ ପ୍ରତାରଣା କରନାହିଁ, ବାଛବିଚାର ନରଖି ସବୁ ମନୁଷ୍ୟଙ୍କୁ ପ୍ରଣାମ କର । ନିଜ ପିତାମାତାଙ୍କୁ ଯେପରି ସମ୍ମାନ କର ଅନ୍ୟ ବୟସ୍କ ଲୋକଙ୍କ ପ୍ରତି ସେଇପରି ବ୍ୟବହାର ଦେଖାଅ । କେହି ଦରିଦ୍ର ଓ ଅଭାବୀ ଲୋକ କିଛି ମାଗିଲେ ତାକୁ ଦାନ କର । ଯଦି ସେ ବିଗରେ ତୁମର ଅକ୍ଷମତା ଥାଏ, ତେବେ ତାକୁ ସମ୍ମାନର ସହିତ ଦୟାପୂର୍ଣ୍ଣ ବଚନ କୁହ ।"

ଏହିପରି ସେ ଆମକୁ ଅନେକ ଉପଦେଶ ଦେବା ସଙ୍ଗେ ସଙ୍ଗେ କହିଥିଲେ—"ଏ ପୃଥିବୀ ଧ୍ବଂସ ପାଇଯିବ; କିନ୍ତୁ ଈଶ୍ବରଙ୍କୁ ମାନୁଥିବା ଓ ତାଙ୍କ ଉପରେ ଆସ୍ଥା ରଖିଥିବା ଲୋକେ ବର୍ତ୍ତିଯିବେ । ସତ୍ୟ ଧର୍ମ ତିଷ୍ଠିରହିବ ଏବଂ ମିଥ୍ୟା ବିଲୁପ୍ତ ହେବ ।"

ସେ ଆହୁରି ମଧ୍ୟ ଅନେକ ଭବିଷ୍ୟବାଣୀ ଶୁଣାଇ କହିଥିଲେ— "ଏ ପୃଥିବୀରେ ମୋର ଜନ୍ମ ଏକ ଐଶ୍ବରିକ ଘଟଣା, ଯଦିବା କାହାକୁ ଏହା ଜଣାନାହିଁ । ହିନ୍ଦୁ, ମୁସଲମାନ, ଫିରିଙ୍ଗି ସବୁ ଜାତିର ମୁଁ ଶାସକ ଓ ବିଚାରକ ହେବି ଏବଂ ଅନ୍ୟ ସମସ୍ତ ଶ୍ରେଣୀର ନରନାରୀ ମୋତେ ସମ୍ମାନ ଦେବେ । କାରଣ, ପରମାତ୍ମା ମୋ ମଧ୍ୟରେ ଆଲୋକ ରୂପେ ପ୍ରବେଶ କରିଛନ୍ତି ।

ମୁଁ ଏ ପୃଥିବୀରେ ଜମି ରହିଥିବା ପାପଭାରକୁ ଧ୍ବଂସ କରିବି । ପୃଥିବୀରେ ଆଉ କେବେ ଯୁଦ୍ଧ ଲଗିବ ନାହିଁ, ଚିତ୍କାର ଶୁଭିବ ନାହିଁ, ମତଭେଦ ରହିବ ନାହିଁ କିମ୍ବା ବିଦ୍ବେଷ, ପ୍ରତାରଣା, ଲୋଭ, ମିଥ୍ୟା, ଚୋରି, ଶୋକ ଓ ଯନ୍ତ୍ରଣା ତିଷ୍ଠିବ ନାହିଁ ।

Digitized by PPRACHIN, SOA

ବାଘ, ଭାଲୁ ଇତ୍ୟାଦି ବନ୍ୟଜନ୍ତୁ, ବିଷଧର ସରୀସୃପ, ଭୟଙ୍କର ଅନିଷ୍ଟକାରୀ ପ୍ରାଣୀ ଆଉ ମନୁଷ୍ୟ ପ୍ରତି ହିଂସ୍ର ହେବେ ନାହିଁ ଏବଂ ଗୋରୁ ଗୋଠ କାହାରି କ୍ଷେତ ବାଡ଼ିର ଫସଲ ନ ଉଜାଡ଼ି ବିନା ଜଗୁଆଳରେ ଘରକୁ ବାହୁଡ଼ି ଆସିବେ । ମେଘ ବେଳ ଜାଣି ବୃଷ୍ଟି କରିବ ଏବଂ ପୃଥିବୀରେ ଫଳ ଓ ଫସଲ ପରିପୂର୍ଣ୍ଣ ହେବ । ମନୁଷ୍ୟର ହୃଦୟରେ ଦିବ୍ୟଭାବ ବିରାଜିତ ହେବ । ନରନାରୀ ପାଟ ପୀତାମ୍ବର ପରିଧାନ କରିବେ । ସମସ୍ତେ ସେହି ପରମାତ୍ମାଙ୍କ ଜୟଗାନ କରିବେ ଏବଂ ପାରସ୍ପରିକ ପ୍ରେମ ମାଧ୍ୟମରେ ତାଙ୍କୁହିଁ ଜାଣିବେ ।”

ଏହିପରି ସେ ଆମକୁ ଅନେକ ଭବିଷ୍ୟବାଣୀ ଶୁଣାଇଥିଲେ ଏବଂ ସେଥିରେ ଆମେ ବିଶ୍ୱାସ ସ୍ଥାପନ କଲୁ । ଆମ ହୃଦୟରେ ଆନନ୍ଦର ଜୁଆର ଖେଳିଗଲା । ତାଙ୍କ ଉପଦେଶଗୁଡ଼ିକ ଆମେ ଆନ୍ତରିକତା ସହ ପାଳନ କଲୁ ।

ଆମେ ପ୍ରତିଦିନ ସକାଳେ ସ୍ନାନ କଲୁ । ଅଧୂଆ ଗୃଜନର ଭାତ ଖାଇଲୁ । ମାଛ, ମାଂସ, ତୈଳ, ପାନ, ବଡ଼ି, ସବୁ ଛାଡ଼ିଦେଲୁ । ତା ସହିତ ମିଥ୍ୟା, ଚୈାର ଓ ଶଠତା ପରିତ୍ୟାଗ କଲୁ । ଆମେ ମିଥ୍ୟାବାଦୀ ଓ ବିଦ୍ୱେଷୀ ଲୋକମାନଙ୍କ ସହ ସମ୍ପର୍କ ଛିନ୍ନ କଲୁ । ମାଳା, ଚନ୍ଦନଟୋପା, ପଇତା ଓ ଆମ ଘରର ଇଷ୍ଟ ଦେବତାଙ୍କ ମୂର୍ତ୍ତିଗୁଡ଼ିକ ପରିତ୍ୟାଗ କଲୁ । ଆମ ଘରର ତୁଳସୀ ଗଛ ସବୁ ଉପାଡ଼ି ଦେଲୁ ଏବଂ ତୀର୍ଥଯାତ୍ରା, ଯଜ୍ଞାନୁଷ୍ଠାନ, ଶ୍ରାଦ୍ଧକର୍ମ ଓ ଗୋ ବ୍ରାହ୍ମଣ ପୂଜା ବନ୍ଦ କରିଦେଲୁ । ଆମେ କୌଣସି ପ୍ରସାଦ ସେବନ କଲୁନାହିଁ କମ୍ପା ଖଞ୍ଜଣୀ ବଜାଇ ଅଶ୍ଲୀଳ ଗୀତ ଗାନ କଲୁନାହିଁ । କୁଟିଳ ଓ କଳହ-ପ୍ରିୟ ଲୋକଙ୍କ ସଙ୍ଗ ଛାଡ଼ି କେବଳ ପରମାତ୍ମାଙ୍କ ଚିନ୍ତାରେ ନିମଗ୍ନ ହେଲୁ । ଏହିପରି ଆମେ ସୁନ୍ଦର ବାବାଜୀଙ୍କ ଆଜ୍ଞାଧୀନ ହୋଇ ରହିଲୁ ।

ପୂର୍ବତନ ଉପାଧ୍ୟକ୍ଷ
ଖ୍ରୀଷ୍ଟ କଲେଜ, କଟକ



Digitized by PPRACHIN, SOA

# ଓଡ଼ିଶାରେ ଖ୍ରୀଷ୍ଟୀୟ ଆଲୋକର ଅଗ୍ରଦୂତ ମହାତ୍ମା ସାଧୁ ସୁନ୍ଦର ଦାସ

ଶ୍ରୀ କ୍ଷୀରୋଦଚନ୍ଦ୍ର ମହାନ୍ତି

ମହାତ୍ମା ସାଧୁ ସୁନ୍ଦର ଦାସ ଜଣେ ସାଧୁ, ସର୍ବଧର୍ମ ସମନ୍ୱୟବାଦୀ, ପଥପ୍ରଦର୍ଶକ, ଯୋଗୀ, ସନ୍ନ୍ୟାସୀ ଓ ସମାଜ ସଂସ୍କାରକ ହିସାବରେ ଓଡ଼ିଶାରେ ବେଶ୍ ସୁପରିଚିତ । କଟକ ଜିଲ୍ଲା ଅନ୍ତର୍ଗତ ଆଠଗଡ଼ ଷ୍ଟେଟର କୁଆଁରପୁର ବା କୁମାରପୁର ଗ୍ରାମରେ ୧୭୨୦ ମସିହାରେ ଜନ୍ମ ହୋଇ ୧୮୩୮ ମସିହା ପର୍ଯ୍ୟନ୍ତ ଦୀର୍ଘ ୧୧୮ ବର୍ଷ କାଳ ସେ ଜୀବିତ ଥିଲେ । ଜୀବନର ଦୀର୍ଘକାଳ ଭିତରେ ଏହି ଶତାୟୁ ପୁରୁଷ ଦେଶ, ଜାତି ଓ ଧର୍ମ ପାଇଁ ଆଜୀବନ ସଂଘର୍ଷ କରିଥିଲେ । (୧)

ସେ କ୍ଷତ୍ରୀୟ କୂଳରେ ଜନ୍ମ ହୋଇଥିବାରୁ ତାଙ୍କ ଶରୀରରେ କ୍ଷତ୍ରିୟ ରକ୍ତ ପ୍ରବାହିତ ହେଉଥିଲା । ସେଇ କାରଣରୁ ହୁଏତ ସେ ପିଲାଟି ଦିନରୁ ବେଶି ଅମାନିଆଁ ଥିଲେ । ସାଙ୍ଗ ସାଥିଙ୍କୁ ଧରି ଗାଁ ପାଖ ଜଙ୍ଗଲକୁ ଯାଇ ପଶୁପକ୍ଷୀ ଶିକାର କରିବା, ପ୍ରତିବେଶୀମାନଙ୍କ ହିତକାର୍ଯ୍ୟ କରିବା ପାଇଁ ଆଗୁଆ ହେବା, ସାଙ୍ଗସାଥିଙ୍କ ମଧ୍ୟରେ ସର୍ଦ୍ଦାର ହେବା, କୌଣସି ଅନ୍ୟାୟ କାର୍ଯ୍ୟରେ ଆଗୁଆ ହୋଇ ତାହାର ପ୍ରତିବାଦ କରିବା ଇତ୍ୟାଦି କାର୍ଯ୍ୟ ତାଙ୍କଠାରେ ପରିଲକ୍ଷିତ ହେଉଥିଲା । (୨)

---

୧ । ସାହୁ, କୃଷ୍ଣମୋହନ; ମହାତ୍ମା ସାଧୁ ସୁନ୍ଦର ଦାସ, କୁଞ୍ଜବିହାରୀ ପ୍ରକାଶନ— ୧ମ ଭାଗ ପୃ-୨ ।

୨ । ସାହୁ, କୃଷ୍ଣମୋହନ; ଏଜନ, ପୃ-୨ ।

Digitized by PPRACHIN, SOA

ଶୈଶବରୁ ପିତୃମାତୃହୀନ ହୋଇଥିଲେ ହେଁ ତାଙ୍କଠାରେ ସମାଜ ସଂସ୍କାର ମନୋଭାବ ନିହିତ ଥିଲା । ଯେ କୌଣସି ପ୍ରକାରେ ଗ୍ରାମ୍ୟ ପାଠଶାଳା ବା ଟୋଲର ଶିକ୍ଷା ସମାପ୍ତ କରି ସେ ସମାଜ ସେବାରେ ଲାଗି ପଡ଼ିଲେ । ସମଗ୍ର ପୃଥିବୀକୁ ଏକ ପରିବାର ବୋଲି ମନେ କଲେ । ପ୍ରଥମେ ଆଠଗଡ଼ ଷ୍ଟେଟ୍‌ ଦରବାରରେ ସାମାନ୍ୟ ଜଣେ ସୈନିକ ଭାବେ ନିଯୁକ୍ତ ପାଇ ଆପଣାର କାର୍ଯ୍ୟଦକ୍ଷତା ବଳରେ ସେନା ନାୟକ ବା ସେନାପତି ପଦକୁ ଉନ୍ନୀତ ହୋଇଥିଲେ । ଧର୍ମନୀତି, ରାଜନୀତି, ସତ୍ୟନୀତି ଓ ଅହିଂସା ନୀତି କ'ଣ, ତାଙ୍କୁ ତାହା ବେଶ୍‌ ଜଣାଥିଲା । (୩)

ଏକଦା ସେ ଡାଳିଯୋଡ଼ା କଲ୍ଲାର ଜଙ୍ଗଲକୁ ମୃଗ ଶିକାର ପାଇଁ ଯାଇଥିବାବେଳେ ତାଙ୍କୁ ଶୂନ୍ୟବାଣୀ ହୋଇଥିଲା । ଫଳରେ ସେ ଜୀବହତ୍ୟା ଓ ହିଂସାର ମାର୍ଗକୁ ପରିହାର କରି ଧର୍ମ ଆଡ଼କୁ ମନ ବଳାଇଲେ ଓ ଶେଷରେ ଆଠଗଡ଼ ଷ୍ଟେଟ୍‌ର ସେନାନାୟକ ପଦରୁ ଅବ୍ୟାହତି ନେଲେ । (୪)

ରାଜକାର୍ଯ୍ୟ ଛାଡ଼ିବା ପରେ ସେ କୁଜିବରଠାରେ ଥିବା ଏକ ବରଗଛ ମୂଳରେ ବସି ତପସ୍ୟା କଲେ । ଇତ୍ୟବସରରେ ସେ ଭାଗବତ, ଗୀତା, ସିଦ୍ଧବାକ୍ୟ, ମାଳିକା, ବେଦ, ବେଦାନ୍ତ, ରାମାୟଣ, ମହାଭାରତ, ସାଂଖ୍ୟ ଯୋଗ, ନ୍ୟାୟ, ତନ୍ତ୍ର, ଦର୍ଶନ, ପାତଞ୍ଜଳ, ମୀମାଂସା ଓ ତର୍କଶାସ୍ତ୍ର ଆଦି ଧର୍ମଗ୍ରନ୍ଥମାନ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ଆଲୋଚନା ମାଧ୍ୟମରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ତାଙ୍କ ମତରେ ସବୁ ଧର୍ମର ମୂଳ ନୀତି ହେଉଛି ଏକ । ଯିଏ ଯେଉଁ ବାଟରେ ଯାଉନା କାହିଁକି; ସମସ୍ତଙ୍କ ଲକ୍ଷ୍ୟ ଏକ ଓ ସମସ୍ତେ ଯାଇ ସେହି ଏକ ଭଗବାନଙ୍କ ଅଙ୍ଗରେ ବିଲୀନ ହେବେ—ଏକଥା ସେ ଅନ୍ୟମାନଙ୍କୁ

3. ସାହୁ, କୃଷ୍ଣମୋହନ; ଏଜନ, ପୃ-୩ ।

4. Sutton, A; Orissa and its Evangelization, P. 153.

Digitized by PPRACHIN, SOA

ବୁଝାଉଥିଲେ । ତାଙ୍କର ଏପରି ଚିନ୍ତା ବହୁ ଲୋକଙ୍କୁ ଆକୃଷ୍ଟ କରିଥିଲା । ସେ ମଧ୍ୟ ବ୍ୟକ୍ତିଗତଭାବେ ବହୁ ଗଣ୍ୟମାନ୍ୟ ଲୋକଙ୍କ ସଂସ୍ପର୍ଶରେ ଆସି ପାରିଥିଲେ । ବହୁ ରାଜା, ମହାରାଜା, ଧନୀ, ଦରିଦ୍ର- ସମସ୍ତେ ଜାତି ଧର୍ମ ନିର୍ବିଶେଷରେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସୁନ୍ଦର ଦାସ ସେହି ଦିନଠାରୁ ଜଗତରେ ଗୁରୁ ବୋଲି ପରିଚିତ ହେଲେ । ତାଙ୍କର ହିନ୍ଦୁ ଧର୍ମଶାସ୍ତ୍ର ସମ୍ବନ୍ଧୀୟ ବାଣୀ ଓ ପ୍ରଚାର ଓଡ଼ିଶା ତଥା ମଧ୍ୟପ୍ରଦେଶର ଅନେକ ମିଶନାରୀ ବା ଧର୍ମ ପ୍ରଚାରକମାନଙ୍କୁ ଆଚମ୍ବିତ କଲା । ସେମାନେ ଦେଖିଲେ ଯେ ସାଧୁ ସୁନ୍ଦର ନିଜର ଶିଷ୍ୟମାନଙ୍କୁ ଦେଉଥିବା ନୈତିକ ଶିକ୍ଷା ଗୁଡ଼ିକ ସାଧାରଣ ସ୍ତରର ନୁହେଁ । (୫) ସାଧୁ ସୁନ୍ଦରଙ୍କ ଦ୍ୱାରା ସୃଷ୍ଟ ପ୍ରୟୋଗାତ୍ମକ ନୀତି (Practical Morality) (୬) ନିୟମରେ ଥିବା ସତ୍ୟ କହିବା, ଚୋରି ନ କରିବା, ଇନ୍ଦ୍ରିୟପରବଶ ନ ହେବା, ହିଂସା ଆଚରଣ ନ କରିବା, ସ୍ପଷ୍ଟବାଦୀ ହେବା, ଗର୍ବ ନ କରିବା, ଦୋଷୀକୁ କ୍ଷମା ଦେବା, ସ୍ତ୍ରୀ ଓ ସନ୍ତାନମାନଙ୍କୁ ଭଲ ପାଇବା, ପିତାମାତାଙ୍କୁ ଭକ୍ତି କରିବା, ମିଥ୍ୟା ସାକ୍ଷୀ ନ ଦେବା, ଠକିବା ବା ପ୍ରତାରଣା ନ କରିବା, ସମସ୍ତଙ୍କୁ ସମଭାବେ ସମ୍ମାନ ଦେଖାଇବା, ବୟସ୍କମାନଙ୍କୁ ସେବା ଦେବା, ଓ ମାନବର ସେବା ହିଁ ଈଶ୍ୱରଙ୍କ ସେବା ଇତ୍ୟାଦିରେ ଖ୍ରୀଷ୍ଟଧର୍ମର ବହୁ ସାମଞ୍ଜସ୍ୟ ରହିଛି । ବିଶେଷ କରି ସାଧୁଙ୍କର ଖ୍ରୀଷ୍ଟ ଚରିତ ଓ ବାଣୀ ସମ୍ବନ୍ଧୀୟ ନିର୍ଭୁଲ ଆଲୋଚନା ସେମାନଙ୍କ ମନରେ ଅନେକ ଆଶା ସଞ୍ଚାର କରିଥିଲା ।

ସାଧୁଙ୍କ ଦ୍ୱାରା ପ୍ରତିଷ୍ଠିତ ବେଦାନ୍ତ ବିଦ୍ୟାଳୟରେ ପ୍ରାୟ ୩୦୦ ଜଣ ବ୍ରାହ୍ମଣ ଓ ୨୦୦ ଜଣ ଅନ୍ୟ ସଂପ୍ରଦାୟର ଶିଷ୍ୟ ଥିଲେ ।

---

5. Clifford, John; "The Orissa Mission"—The Centenary volume of the Baptist Missionary Society, 1792-1892—Ed. by J. B. Myers, London. 1892, PP. 237-256.

6. ସାହୁ, କୃଷ୍ଣମୋହନ; ଏଜନ ପୃ-୧୯--୨୦ ।

Digitized by PPRACHIN, SOA

ସେହି ଶିଷ୍ୟମାନେ ବେଦ, ପୁରାଣ ଓ ଅନ୍ୟାନ୍ୟ ହିନ୍ଦୁ ଶାସ୍ତ୍ର ଅଧ୍ୟୟନ କରୁଥିଲେ । ଅଧ୍ୟାପନା ସହ ସାଧୁ ନିଜର ଅଲୌକିକ ପ୍ରତିଭାକୁ ଶିଷ୍ୟମାନଙ୍କ ଆଗରେ ପ୍ରଦର୍ଶନ କରୁଥିଲେ । (୭)

ଯେତେବେଳେ ଓଡ଼ିଶାରେ ଛାପାଖାନା ଓ ଖବର ଛାପିବା କଥା ଅଜଣା ଥିଲା ଓ ଯେତେବେଳେ ରାଜା ରାମମୋହନ ରାୟ ହିନ୍ଦୁଧର୍ମ ଓ ହିନ୍ଦୁ ଏକେଶ୍ୱରବାଦ (Hindu Theism) ସମ୍ବନ୍ଧୀୟ "ସମ୍ବାଦ କୌମୁଦୀ" କଲିକତାରୁ ବାହାର କରୁଥିଲେ, ସେହି ସମୟରେ ସାଧୁ ସୁନ୍ଦର ସ୍ୱହସ୍ତ ଲିଖିତ ଏକ ଖବର କାଗଜ ପ୍ରକାଶ କରିଥିଲେ । ତାହାର ନାମ ଥିଲା 'କୁଜିବର ପତ୍ର' । ଏହି ସମ୍ବାଦପତ୍ରରେ ସାମାଜିକ, ଧାର୍ମିକ ସମସ୍ୟାମାନ ଓ ଶାସନ ସମ୍ବନ୍ଧୀୟ ଖବର ବାହାରୁଥିଲା । ଏହି କାର୍ଯ୍ୟରେ ତାଙ୍କୁ ତାଙ୍କର ଦୁଇଜଣ ଶିଷ୍ୟ ଗଙ୍ଗାଧର ଷଡ଼ଙ୍ଗୀ ଓ ରାମଚନ୍ଦ୍ର ଝା ଯାଚକ ସାହାଯ୍ୟ କରୁଥିଲେ । କୁଜିବର ପତ୍ର ପ୍ରକାଶିତ ହେବା ପୂର୍ବରୁ ଏହା ବେଦାନ୍ତ ବିଦ୍ୟାଳୟର ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ଆଲୋଚିତ ହେଉଥିଲା । ହସ୍ତଲିଖିତ ଏଇ ଖବର ଗୁଡ଼ିକ ବହୁ ସଂଖ୍ୟାରେ ଦୂରକୁ ପ୍ରେରଣ କରାଯାଉଥିଲା । ମୁଖ୍ୟ ସ୍ଥାନମାନଙ୍କରେ ଥିବା ପ୍ରାଚୀର ଗୁଡ଼ିକରେ ମୁଖ୍ୟ ଖବରମାନଙ୍କୁ ଛାପି ଦିଆ ଯାଉଥିଲା । ଖବର କାଗଜ ପ୍ରକାଶ କରିବାର ଏକ ନିର୍ଦ୍ଦିଷ୍ଟ ସମୟ ସୀମା ନଥିଲା । ପରିସ୍ଥିତି ଅନୁସାରେ ଏହା ମାସିକ, ସାପ୍ତାହିକ ଓ ଦୈନିକ ମଧ୍ୟ ହୋଇ ପାରୁଥିଲା । (୮)

କୁଜିବର ପତ୍ରର କିଛି ଅଂଶ ଯେଉଁଥିରେ ସାମାଜିକ ତଥା ଧାର୍ମିକ ସମସ୍ୟା ବିଗରେ ସାଧୁଙ୍କର ମତାମତ ପ୍ରତିଫଳିତ

---

୭ । Young, A H; Note on Mahatma Sadhu Sundar Das—published in ମହାତ୍ମା ସାଧୁ ସୁନ୍ଦର ଦାସ— କୃଷ୍ଣମୋହନ ସାହୁ PP. 12-13.

୮ । Suar, Dasarathi; The Christian Missionaries in Orissa; The role of Early Converts from 1822-1846. P. 49.

Digitized by PPRACHIN, SOA

ହୋଇଥିଲା—ତାହାକୁ ସଟନ ମହାଶୟ ନିଜର ଏକ ଲେଖା ସହିତ ସଂଲଗ୍ନ କରି ଇଂଲଣ୍ଡକୁ ପଠାଇଥିଲେ । ତାଙ୍କ ଲେଖାରେ ବ୍ରିଟିଶ ଶାସକମାନେ ଓଡ଼ିଆଙ୍କ ଶିକ୍ଷା ପାଇଁ କ'ଣ କରିଛନ୍ତି ବୋଲି ସେ ପ୍ରଶ୍ନ ପଚାରିଥିଲେ ।

ଜଣେ ଶିକ୍ଷାବିତ୍ ହିସାବରେ ତାଙ୍କର ମଧ୍ୟ ସୁନାମ ଥିଲା । ବ୍ରାହ୍ମଣମାନଙ୍କୁ ବୈଦିକ ଶିକ୍ଷା ଦେବାପାଇଁ ବୈଦିକ ବିଦ୍ୟାଳୟ ଖୋଲିବାକୁ ସେ ବ୍ରିଟିଶ ସରକାର ତଥା ଖ୍ରୀଷ୍ଟୀୟ ଧର୍ମ ପ୍ରଚାରକମାନଙ୍କୁ ଆବେଦନ କରିଥିଲେ । ଓଡ଼ିଶାରେ ଗ୍ରାମ୍ୟ ବିଦ୍ୟାଳୟ ଖୋଲିବା ସଂପର୍କରେ ଓଡ଼ିଶାର ବାପ୍ଟିଷ୍ଟ ମିଶନାରୀ ୧୮୬୭ ମସିହାରେ ସାଧୁ ସୁନ୍ଦରଙ୍କ ସହ ପରାମର୍ଶ କରିଥିଲେ । ସି. ଲେସିଙ୍କ ରିପୋର୍ଟ ଅନୁସାରେ ଏହି ବିଷୟ ସମ୍ବନ୍ଧିତ ସରକାରଙ୍କ ଏକ ଚିଠି ବାପ୍ଟିଷ୍ଟ ମିଶନାରୀଙ୍କ ଜରିଆରେ ଆସିଥିଲା । ଏହି ଚିଠିରେ ସୁନ୍ଦର ବାବାଜୀଙ୍କୁ ଶିକ୍ଷା ଅଧୀକ୍ଷକ ଭାବେ ନିଯୁକ୍ତି ଦେବା ଓ ପ୍ରାଇଭେଟ ଶିକ୍ଷା ଉପରେ ତାଙ୍କର କର୍ତ୍ତୃତ୍ୱ ରହିବା ବିଷୟ ସ୍ଥାନ ପାଇଥିଲା । (୯)

ସମାଜ ସଂସ୍କାରକ ହିସାବରେ ମଧ୍ୟ ସାଧୁ ସୁନ୍ଦର ବେଶ୍ ଜଣାଶୁଣା ଥିଲେ । ସେ ତତ୍କାଳୀନ ଜାତିପ୍ରଥାକୁ ମାନୁ ନଥିଲେ ଓ ସବୁ ଧର୍ମକୁ ସମ୍ମାନ ପ୍ରଦର୍ଶନ କରୁଥିଲେ । ଯଦିଓ ସେ ହିନ୍ଦୁ ଥିଲେ, ହେଲେ ଅନ୍ୟ ଧର୍ମ, ବିଶେଷକରି ଖ୍ରୀଷ୍ଟଧର୍ମର ସାରମର୍ମ ବର୍ଣ୍ଣନା କରିବାକୁ ପଛୁଉ ନ ଥିଲେ । ନିଜ ଶିଷ୍ୟମାନଙ୍କ ଆଗରେ ଖ୍ରୀଷ୍ଟଧର୍ମର ଦଶ ଆଜ୍ଞା (Ten Commandments) ଅତି ସରଳଭାବେ ବୁଝାଉ-ଥିଲେ । "ସବୁ ସତ୍ୟମାନଙ୍କର ନିର୍ଯ୍ୟାସ ଦଶ ଆଜ୍ଞା ଭିତରେ ଅଛି ଓ ଏହା ଏକ ଜୀବନ୍ତ ଶାସ୍ତ୍ର" ବୋଲି ପ୍ରତିପାଦନ କରୁଥିଲେ । (୧୦) ଖ୍ରୀଷ୍ଟଧର୍ମର ଦଶ ଆଜ୍ଞା ପରି ସେ ନିଜ ଶିଷ୍ୟମାନଙ୍କ ପାଇଁ ମଧ୍ୟ ଦଶ ଆଜ୍ଞା ପ୍ରଣୟନ କରିଥିଲେ ।

---

୯ । Sutton, A; A narrative of the Mission to Orissa, P. 255.

୧୦ । Sutton A; Ibid.

Digitized by PPRACHIN, SOA

ସେତେବେଳେ କୁଜାବର ମଠରେ ଦୁଇଟି ମୁଖ୍ୟ ବାର୍ଷିକ ଉତ୍ସବ ପାଳିତ ହେଉଥିଲା । ଜାତି, ଧର୍ମ ନିର୍ବିଶେଷରେ ବହୁତ ଲୋକ ସେଠାରେ ରୁଣ୍ଡ ହେଉଥିଲେ । ୧୮୨୬ ମସିହା ଅକ୍ଟୋବର ମାସ ୧୦ ତାରିଖରେ ସେଠାରେ ଅନୁଷ୍ଠିତ ହୋଇଥିବା ଏକ . ଉତ୍ସବକୁ ମିଶନାରୀମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଏହି ଉତ୍ସବରେ ଖ୍ରୀଷ୍ଟିଆନ ମିଶନାରୀ ଆମୋସ ସଟନ, ଉପସ୍ଥିତ ରହି ବେଶ୍ ଆନନ୍ଦିତ ହୋଇଥିଲେ । ସେ ନିଜର ରିପୋର୍ଟରେ ସାଧୁଙ୍କର ଅଗାଧ ପାଣ୍ଡିତ୍ୟ ଥିଲା ବୋଲି ବର୍ଣ୍ଣନା କରିଛନ୍ତି ।

ସାଧୁ ସୁନ୍ଦର ଭବିଷ୍ୟତ ବାଣୀ କହି ପାରୁଥିଲେ । ସେ ନିଜର ଭବିଷ୍ୟତ ବାଣୀରେ କହିଥିଲେ ଯେ ସହସ୍ରାବ୍ଦ ପ୍ରାରମ୍ଭ କାଳରେ ମିଥ୍ୟା ଓ ଅସତ୍‌ମତ ବଦଳରେ ପୃଥିବୀରେ ଈଶ୍ୱର ଭକ୍ତି ଓ ଶାନ୍ତି ପ୍ରତିଷ୍ଠା ହେବ । (୧୧) ମିଶନାରୀମାନେ ଆଶା କରୁଥିଲେ ଯେ ସାଧୁ ସୁନ୍ଦର ସେମାନଙ୍କ ପାଇଁ ଖ୍ରୀଷ୍ଟଧର୍ମ ପ୍ରଚାର କରିବେ; କିନ୍ତୁ ତାହା ସଫଳ ହୋଇ ପାରି ନଥିଲା । ସେ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ କୌଣସି ଆଗ୍ରହ ପ୍ରକାଶ କରି ନଥିଲେ । ଫଳରେ ଧର୍ମ ପ୍ରଚାରକମାନଙ୍କୁ ନିରାଶ ହେବାକୁ ପଡ଼ିଥିଲା । ସଟନଙ୍କ ଭାଷାରେ ମିଶନାରୀମାନଙ୍କ ପ୍ରଚେଷ୍ଟା ଅସଫଳ ନ ଥିଲା । ସେ ଆମ ଧର୍ମଧାରାକୁ ଅନୁମୋଦନ କରିଥିଲେ । ଫଳରେ ତାଙ୍କ ଶିଷ୍ୟମାନେ ଆମ ଧର୍ମମତକୁ ପଢ଼ିବାକୁ ଉତ୍ସାହିତ ହୋଇଥିଲେ ଓ ହିନ୍ଦୁସଂକୀର୍ଣ୍ଣ ସୀମା ଭିତରେ ନ ରହି ବଢ଼ିବାକୁ ଚେଷ୍ଟା କରୁଥିଲେ । (୧୨)

ଯଦିଓ ସାଧୁ ସୁନ୍ଦର ଖ୍ରୀଷ୍ଟଧର୍ମ ସମ୍ବନ୍ଧରେ ତାଙ୍କ ଶିଷ୍ୟମାନଙ୍କୁ ବୁଝାଉଥିଲେ ଏବଂ ସାମାଜିକ ଓ ଧାର୍ମିକ ସମସ୍ୟା ଉପରେ ମିଶନାରୀ-ମାନଙ୍କ ସହ ଆଲୋଚନା କରୁଥିଲେ; ତଥାପି ହିନ୍ଦୁଧର୍ମ ଉପରୁ ତାଙ୍କର ବିଶ୍ୱାସ ତୁଟି ନଥିଲା । ମିଶନାରୀମାନେ ବ୍ୟବହାର କରୁଥିବା ଧାରାକୁ

---

୧୧ । Sutton, A; Orissa and its Evangelization P. 155.

୧୨ । Carey, William; Biography-Vol. III, P. 443.

Digitized by PPRACHIN, SOA

ସେ ମଧ୍ୟ ପସନ୍ଦ କରୁ ନଥିଲେ । ଏହି କଥା ଗୋଟିଏ ଘଟଣାରୁ ସ୍ପଷ୍ଟ ହୋଇଥିଲା, ଯେଉଁଠି କମଳା ଓ ଊର୍ମି ନାମରେ ଦୁଇଜଣ ହିନ୍ଦୁ ମହିଳାଙ୍କୁ ସେମାନଙ୍କ ସ୍ୱାମୀଙ୍କ ଅଜାଣତାରେ ସେମାନଙ୍କୁ ମିଶନାରୀ-ମାନେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରିଥିଲେ । (୧୩)

ଏହି କାର୍ଯ୍ୟ ସାଧୁଙ୍କର ଜଣେ ଶିଷ୍ୟ ଗଙ୍ଗାଧରଙ୍କ ପ୍ରରୋଚନାରେ ଅନୁଷ୍ଠିତ ହୋଇଥିଲା । ସାଧୁ ଏ କଥା ଜାଣିବା ପରେ ଦୁଃଖ ପ୍ରକାଶ କଲେ ଓ କଲେକ୍ଟରଙ୍କ କୋର୍ଟରେ ଏକ କେଶ୍ କରିବା ପାଇଁ କମଳାର ସ୍ୱାମୀଙ୍କୁ କହିଲେ । କଲେକ୍ଟରଙ୍କ ବିଚାରାଳୟରେ କେସ୍ ରୁଜୁ କରାଗଲା । କିନ୍ତୁ ଦୁର୍ଭାଗ୍ୟବଶତଃ କେସ୍ଟି ସେଠାରେ ରଦ୍ଦ ହୋଇଗଲା । କମଳାର ସ୍ୱାମୀ ପୁନର୍ବାର ଜିଲ୍ଲା ମାଜିଷ୍ଟ୍ରେଟ୍ଙ୍କ କୋର୍ଟରେ ଆବେଦନ କଲେ । ବିଚାରରେ ମାଜିଷ୍ଟ୍ରେଟ୍ ୱିଲିୟମ୍ ୱିଲ୍କିନ୍‌ସନ ସ୍ତ୍ରୀଲୋକଟି ନିଜେ ପିନ୍ଧିଥିବା ଅଳଙ୍କାର ସହିତ ଶିଶୁ ସନ୍ତାନଟିକୁ ତାର ସ୍ୱାମୀଙ୍କ ହାତରେ ଅର୍ପଣ କରିବାକୁ ଆଦେଶ ଦେଲେ ଏବଂ ମିଶନାରୀମାନେ ଏତାଦୃଶ କାର୍ଯ୍ୟ ଭବିଷ୍ୟତରେ ନ କରିବା ପାଇଁ ସେମାନଙ୍କୁ ତାଗିଦ୍ କଲେ । ଏପରି ଆଦେଶ ବିରୁଦ୍ଧରେ କଲିକତାର ନିଜାମତ ଅଦାଲତରେ ମିଶନାରୀମାନେ ପୁଣି କେସ୍ ରୁଜୁ କଲେ । (୧୪)

ଏଥିରୁ ଏହା ସ୍ପଷ୍ଟ ହୋଇଥିଲା ଯେ ସାଧୁ ଖ୍ରୀଷ୍ଟଧର୍ମ ଏବଂ ସେମାନଙ୍କର ଧର୍ମାନ୍ତରୀକରଣ ପ୍ରକ୍ରିୟାର ସପକ୍ଷରେ ନଥିଲେ । ଖ୍ରୀଷ୍ଟ-ଧର୍ମକୁ ସେ ସମ୍ମାନ ଦେଉଥିଲେ ସତ; କିନ୍ତୁ ତାହାକୁ ଗ୍ରହଣ କରିବାକୁ ସେ ତାଙ୍କର ଶିଷ୍ୟମାନଙ୍କୁ ପ୍ରବର୍ତ୍ତାଉ ନଥିଲେ । ସାଧୁଙ୍କ ପ୍ରବର୍ତ୍ତାଇବା କଥା ମଧ୍ୟ ମିଶନାରୀମାନେ ସେମାନଙ୍କ ରିପୋର୍ଟରେ ଦର୍ଶାଇ ନଥିଲେ । ସେ ତାଙ୍କର ଶିଷ୍ୟମାନଙ୍କୁ ମୂର୍ତ୍ତିପୂଜା ନ କରିବାକୁ ଓ ତୀର୍ଥଯାତ୍ରା ନ କରିବାକୁ ଉପଦେଶ ଦେଉଥିଲେ । ଦୁର୍ଭାଗ୍ୟବଶତଃ ତାଙ୍କର ହିନ୍ଦୁ ଓ ଖ୍ରୀଷ୍ଟଧର୍ମର ସମନ୍ୱୟ ଆଣିବାର ପ୍ରୟାସକୁ ତାଙ୍କ

---

୧୩ । Roy, P. C; Short Synopssis, op cit. PP 25-26.

୧୪ । Sutton, A; Orissa and its Evangelization PP 207-208.

Digitized by PPRACHIN, SOA

ଶିଷ୍ୟମାନେ ଭୁଲ୍ ବୁଝିଥିଲେ । ଏପରିକି ତାଙ୍କର ଜଣେ ପ୍ରଧାନ ଶିଷ୍ୟ ନିଜ ଇଚ୍ଛାରେ ପ୍ରଥମ କରି ଖ୍ରୀଷ୍ଟଧର୍ମ ଗ୍ରହଣ କଲେ । ସାଧୁଙ୍କଠାରେ କିଛି ସୁ ଚରିତ୍ର ନାହିଁ ବୋଲି ମିଶନାରୀମାନେ କହି ବୁଲିଲେ ।

ସାଧୁଙ୍କର ପ୍ରଧାନ ଶିଷ୍ୟମାନଙ୍କ ମଧ୍ୟରୁ ଏକତମ ରାମଚନ୍ଦ୍ର ଯାଚକ ଖ୍ରୀଷ୍ଟଧର୍ମ ପ୍ରତି ଆକୃଷ୍ଟ ହୋଇ ସାଧୁଙ୍କୁ ପରିତ୍ୟାଗ କଲାପରେ ତାଙ୍କ ସମ୍ପର୍କରେ ଟିପଣୀ ଦେଇ କହିଥିଲେ—

"ଦିନକୁ ଦିନ ସାଧୁଙ୍କ ସୁଖ୍ୟାତି ଲୁପ୍ତ ହେଲା । ତାଙ୍କର କୁକାର୍ଯ୍ୟ ପାଇଁ ଆମ ହୃଦୟ ତାଙ୍କୁ ଆଉ ଭଲ ପାଇଲା ନାହିଁ । ବର୍ଷ ବର୍ଷ ଧରି ମୁଁ ନିଷ୍କପଟ ଭାବେ ତାଙ୍କର ସେବା କରିଥିଲି; କିନ୍ତୁ ପରେ, ତାଙ୍କର ଦୁଷ୍ଟାମି ଦେଖି, ମୁଁ ତାଙ୍କୁ ଆଉ ସମ୍ମାନ ଦେଲି ନାହିଁ । (୧୫)

ପ୍ରକୃତରେ ସାଧୁ ସୁନ୍ଦର ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ଇଚ୍ଛୁକ ନଥିଲେ ଓ ସେ ନିଜକୁ ଯୀଶୁଖ୍ରୀଷ୍ଟଙ୍କର ଏକ ଅବତାର ବୋଲି ମନେ କରୁଥିଲେ । (୧୬) ହିନ୍ଦୁ ଧର୍ମ ସହ ଖ୍ରୀଷ୍ଟ ଧର୍ମର ସମନ୍ୱୟ ଆଣିବାକୁ ସେ ଚେଷ୍ଟା କରୁଥିଲେ । ସବୁରି ମୂଳରେ ଥିଲା ଭଙ୍ଗି ହୋଇଯାଉଥିବା ହିନ୍ଦୁ ଧର୍ମକୁ ରକ୍ଷା କରିବା, କିନ୍ତୁ ମରିଯିବା ପରେ ସେ ହିନ୍ଦୁ କିମ୍ବା ଖ୍ରୀଷ୍ଟିଆନ କୌଣସି ସମ୍ପ୍ରଦାୟର ହୋଇ ନଥିଲେ ।

ହରେକୃଷ୍ଣ ମହତାବ ରାଜ୍ୟ ଗ୍ରନ୍ଥାଗାର
ଭୁବନେଶ୍ୱର ।



୧୫ । Sutton, A; Orissa and its Evangelization, P. 166.

୧୬ । Dhall, Manjusri; The British Rule—Missionary Activities in Orissa (1822-1947) P 105.

Digitized by PPRACHIN, SOA

# ସଂସ୍କାରକ ସାଧୁ ସୁନ୍ଦର ଦାସ

ଡକ୍ଟର ଧରଣୀଧର ନାୟକ

ରବର୍ଟ କ୍ଲାଇବ ଭାରତରେ ଇଂରେଜ ସାମ୍ରାଜ୍ୟର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । ବାଣିଜ୍ୟ କରିବାକୁ ଆସିଥିବା ଇଂରେଜ ଜାତି କାଳକ୍ରମେ ଶାସକ ପାଲଟିଗଲେ । ଇଂରେଜମାନଙ୍କ ଆଗମନ ସହିତ ଏ ଦେଶକୁ ଆସିଲା ସେ ଦେଶର ଶିକ୍ଷା, ସଂସ୍କୃତି, ସଭ୍ୟତା ଓ ଧର୍ମ । ସେମାନଙ୍କର ଗୋଟିଏ ହାତରେ ବନ୍ଧୁକ ତ ଆର ହାତରେ ଥିଲା ବାଇବେଲ । ଧର୍ମ ପ୍ରଚାର ପାଇଁ ସେମାନଙ୍କ ସଙ୍ଗରେ ଏ ଦେଶକୁ ଆସିଥିଲେ ଅସଂଖ୍ୟ ମିଶନାରୀ । ଅବଶ୍ୟ ଅଶିକ୍ଷା, ଅନ୍ଧବିଶ୍ୱାସ, କୁସଂସ୍କାର ଓ ରକ୍ଷଣଶୀଳତାରେ ଭାରତୀୟ ସମାଜ ବୁଡ଼ି ରହିଥିଲା । ଇଂରେଜମାନଙ୍କୁ ନିଜର ସାମ୍ରାଜ୍ୟ ବିସ୍ତାର କରିବା ପାଇଁ ଏହା ଥିଲା ସୁବର୍ଣ୍ଣ ସୁଯୋଗ । ସେମାନଙ୍କ ଅନ୍ୟାୟ, ଅତ୍ୟାଚାର ଓ ଶୋଷଣ ବିରୋଧରେ ପ୍ରତିବାଦ କରିବାପାଇଁ ସମ୍ବାଦପତ୍ରଟିଏ ସେକାଳରେ ନଥିଲା । ଭିନ୍ନ ଭିନ୍ନ ସ୍ଥାନରେ ଘଟୁଥିବା ଘଟଣାବଳୀ ଜାଣିବାପାଇଁ ଲୋକମାନଙ୍କର ସୁଯୋଗ ନଥିଲା । ଅଜ୍ଞତା, ଦାରିଦ୍ର୍ୟ ଓ ଶାସକର ମନମୁଖୀ କାର୍ଯ୍ୟକଳାପର କଠୋରତାରେ ଲୋକମାନଙ୍କର ସୃଜନାତ୍ମକ ଶକ୍ତି ପଙ୍ଗୁ ପାଲଟିଗଲା । କିନ୍ତୁ ଭାରତର ତିନୋଟି ବନ୍ଦର ନଗରୀ କଲିକତା, ବମ୍ବେ ଓ ମାନ୍ଦ୍ରାଜ ଇଂରେଜ ଶାସନର କ୍ଷମତା ଓ ବିତ୍ତର ପ୍ରାଣକେନ୍ଦ୍ର ହୋଇଗଲା ।

ଭାରତର ରାଜନୈତିକ, ଅର୍ଥନୈତିକ, ସାମାଜିକ ଓ ଧର୍ମୀୟ ଜୀବନର ଏହି ଦୁର୍ଦ୍ଦିନରେ ରାଜା ରାମମୋହନଙ୍କର ଆବିର୍ଭାବ ଘଟିଥିଲା । ରାମମୋହନ ହିଁ ଆଧୁନିକ ଭାରତବର୍ଷରେ ଶିକ୍ଷା ଓ ସାଂସ୍କୃତିକ ଜୀବନରେ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲେ । ଧର୍ମ ସଂସ୍କାର ସଙ୍ଗେ ସଙ୍ଗେ ସାମାଜିକ ସଂସ୍କାର ଉପରେ ସେ ଅଧିକ ଗୁରୁତ୍ୱ-

*

Digitized by PPRACHIN, SOA

ଆକ୍ଷେପ କରୁଥିଲେ । ଲୋକମାନଙ୍କ ମଧ୍ୟରେ ରାଜନୈତିକ ସଚେତନତା ସୃଷ୍ଟି କରିବାପାଇଁ ସେ ସମ୍ବାଦପତ୍ର ପ୍ରକାଶ ଓ ସାମ୍ବାଦିକମାନଙ୍କ ସ୍ୱାଧୀନତା ପାଇଁ ଯୁକ୍ତି ବାଢ଼ିଥିଲେ; କିନ୍ତୁ ଇଷ୍ଟ ଇଣ୍ଡିଆ କମ୍ପାନି ସମ୍ବାଦପତ୍ର ଓ ସାମ୍ବାଦିକମାନଙ୍କୁ ସୁନଜରରେ ଦେଖୁ ନଥିଲା । କମ୍ପାନିର ଶତ୍ରୁ ମନୋଭାବାପନ୍ନ ମାନସିଁ ଭାରତୀୟ ସମ୍ବାଦପତ୍ରର କଣ୍ଠରୋଧ କରିଦେଇଥିଲା । ଜନମତ ଜାଗ୍ରତ କରିବା ସଙ୍ଗେ ସଙ୍ଗେ ସରକାରୀ କଳକୁ ସଠିକ୍ ରାସ୍ତାରେ ଚଳାଇବା ପାଇଁ ସମ୍ବାଦପତ୍ରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି ରାମମୋହନ ବୁଝିଥିଲେ । ତେଣୁ ସେ ପ୍ରଥମରୁ ସାମ୍ବାଦିକତା ଓ ସମ୍ବାଦପତ୍ରର ସ୍ୱାଧୀନତା ପାଇଁ ସ୍ୱର ଉତ୍ତୋଳନ କରିଥିଲେ । ସେଥିପାଇଁ "ରାମମୋହନ ରାୟଙ୍କୁ ଭାରତୀୟ ସମ୍ବାଦପତ୍ର ଏବଂ ସାମ୍ବାଦିକତାର ଏକ ରକମ ପ୍ରବର୍ତ୍ତକ, ବା ପୃଷ୍ଠ-ପୋଷକ ରୂପେ ଗ୍ରହଣ କରାଯାଇଥାଏ ।" (୧) ତାଙ୍କଦ୍ୱାରା ସମ୍ପାଦିତ 'ସମ୍ବାଦ କୌମୁଦୀ' ଡିସେମ୍ବର ୨୧ ତାରିଖ ୧୮୨୧ ସାଲରେ ପ୍ରକାଶ ପାଇଥିଲା; କିନ୍ତୁ ରାଜା ରାମମୋହନଙ୍କର ବହୁ ପୂର୍ବରୁ ଓଡ଼ିଶାର ଜଣେ ସାଧୁ ଏ କ୍ଷେତ୍ରରେ ପ୍ରାଥମିକ ଉଦ୍ୟମ କରି ସଫଳତା ଲାଭ କରିଥିଲେ । ଦୃଷ୍ଟି ବହିର୍ଭୂତ ଏକ ଅଜଣା ସ୍ଥାନରେ ତାଙ୍କର ସାଧନାସ୍ଥଳୀ ଅବସ୍ଥିତ ଥିବାରୁ ପ୍ରତିଷ୍ଠା ଅର୍ଜନ କ୍ଷେତ୍ରରେ ପ୍ରଶଂସା ଲାଭଠାରୁ ସେ ଦୂରରେ ରହିଗଲେ । ସେହି ସାଧୁ ହେଉଛନ୍ତି ସୁନ୍ଦର ଦାସ ।

୧୭୨୦ ମସିହାରେ ସୁନ୍ଦର ଦାସଙ୍କର ଜନ୍ମ । ତାହା ଥିଲା ଓଡ଼ିଶାରେ ମରହଟ୍ଟାମାନଙ୍କ ଶାସନ ସମୟ । ଗଡ଼ଜାତ ରାଜ୍ୟ ଆଠଗଡ଼ ଅନ୍ତର୍ଗତ କୁମାରପୁର ଗ୍ରାମରେ ସେ ଜନ୍ମଲାଭ କରିଥିଲେ । ପିଲାଟି-ବେଳୁ ସେ ପିତୃମାତୃହୀନ ହୋଇପଡ଼ିଲେ । ଶିକ୍ଷାଲାଭ ପାଇଁ ସେ ସମୟରେ ସୁବ୍ୟବସ୍ଥା ନ ଥିଲା । କେଉଁଠି କେଉଁଠି ସଂସ୍କୃତ ଟୋଲରେ ପାରମ୍ପରିକ ଶିକ୍ଷା ପ୍ରଦାନ କରାଯାଉଥିଲା । ସୁନ୍ଦର ଦାସ ସେହିଭଳି ଏକ ସଂସ୍କୃତ ଟୋଲରେ ଶିକ୍ଷା ଲାଭ କରି ଆଠଗଡ଼ ରାଜାଙ୍କର ସୈନ୍ୟ ବାହିନୀରେ ଜଣେ ସାମାନ୍ୟ ସୈନିକ ଭାବରେ କର୍ମମୟ ଜୀବନ ଆରମ୍ଭ କରିଥିଲେ । ପିଲାଟିବେଳୁ ସୁନ୍ଦର ଦାସ ବିଚକ୍ଷଣ ବୁଦ୍ଧିସମ୍ପନ୍ନ ଥିଲେ ।

Digitized by PPRACHIN, SOA

ତାଙ୍କର ପ୍ରତ୍ୟୁତ୍ପନ୍ନମତିତା ତାଙ୍କୁ ବହୁକ୍ଷେତ୍ରରେ ସଫଳତା ଆଣି ଦେଉଥିଲା । ସାଙ୍ଗମାନଙ୍କ ମେଳରେ ନେତା ହେବା ତାଙ୍କର ସହଜାତ ଗୁଣ ଥିଲା । ନିଜର ବୁଦ୍ଧି ଓ ବୀରତ୍ୱ ବଳରେ ସେ ସାଧାରଣ ସୈନିକରୁ ଗଡ଼ଜାତର ସେନାନାୟକ ହୋଇପାରିଥିଲେ ।

ଶିକାର କରିବା ସୁନ୍ଦର ଦାସଙ୍କର ଅନ୍ୟ ଏକ ବିଳାସ ଥିଲା । ଆଠଗଡ଼ ରାଜ୍ୟକୁ ଲାଗିଥିବା ଡାଳଯୋଡ଼ା ଜଙ୍ଗଲ ତାଙ୍କ ଶିକାର ପାଇଁ ଥିଲା ପ୍ରଶସ୍ତ କ୍ଷେତ୍ର । ଯୁଦ୍ଧ ବିରାମ ସମୟରେ ଶିକାର କରି ସେ ସୈନିକର ପିପାସା ମେଣ୍ଟାଉଥିଲେ । ଏକଦା ଡାଳଯୋଡ଼ା ଜଙ୍ଗଲରେ ଗୋଟିଏ ମୃଗକୁ ସେ ଶରବିଦ୍ଧ କରିବାକ୍ଷଣି ମୃଗଟି ରାମନାମ ଉଚ୍ଚାରଣ କରି ମୃତ୍ୟୁବରଣ ଲାଭ କଲା । ହଠାତ୍ ମୃଗ ଶରୀରରୁ ଏକ ଜ୍ୟୋତିର୍ମୟ ପୁରୁଷଙ୍କର ଆବିର୍ଭାବ ଘଟିଲା । ସେ ସୁନ୍ଦର ଦାସଙ୍କ ଏଭଳି କାର୍ଯ୍ୟକୁ ବାରଣ କରି ଧର୍ମ ଓ ସତ୍‌ପଥରେ ପରିଚାଳିତ ହେବାପାଇଁ ଉପଦେଶ ଦେଲେ । କିଛି ସମୟ ପରେ ସୁନ୍ଦର ଦାସ ପ୍ରକୃତିସ୍ଥ ହେଲେ ଏବଂ ତାଙ୍କ ଜୀବନର ଗତିପଥ ବଦଳିଗଲା । ଆଠଗଡ଼ ରାଜାଙ୍କର ସେନା-ନାୟକ ପଦ ସେ ତ୍ୟାଗ କଲେ । ପାର୍ଥିବ ସଂସାରର ମୋହ ମାୟା ତ୍ୟାଗ କରି ତପସ୍ୱୀର ପଥ ସେ ବାଛିନେଲେ ।

ଆଠଗଡ଼ ରାଜ୍ୟରୁ ଚାଲିଆସି ସୁନ୍ଦର ଦାସ ଚୌଦ୍ୱାର ସନ୍ନିକଟ ଏକ କ୍ଷୁଦ୍ର ଗ୍ରାମ ଉପାନ୍ତରେ ବାସ କଲେ । ପ୍ରକୃତିର ଏହା ଥିଲା ଅପରୂପ ସ୍ଥାନ । କପିଳାସ କନ୍ଦରରୁ ଗନ୍ଧନଦୀ ପ୍ରବାହିତ ହୋଇ ଅଦୂରର ବିରୂପା ନଦୀରେ ମିଶିଯାଇ ତାରି ଶଯ୍ୟାରେ ଏଇ ମନୋରମ ସ୍ଥାନଟିକୁ ସୃଷ୍ଟି କରିଥିଲା । ଏଇ ସ୍ଥାନଟି ଯେତିକି ନିର୍ଜନ ସେତିକି ଥିଲା ପ୍ରାଣବନ୍ତ ଓ ପବିତ୍ର । ଏହି ସ୍ଥାନଟିର ପ୍ରଶସ୍ତି ଗାନ କରିବାକୁ ଯାଇ ମିଃ ସଟନ ଲେଖିଥିଲେ—"it is a true picture of the moral world in heathen lands of Utkal.". (୨)

ଏଇ ଗ୍ରାମର ଏକ ବିରାଟ ବଟବୃକ୍ଷର ମୂଳକୁ ସୁନ୍ଦର ଦାସ ତପସ୍ୟାସ୍ଥଳୀ ରୂପେ ବାଛି ନେଲେ । ସେ ଏଠାରେ ଅହୋରାତ୍ର ତପସ୍ୟାରେ ନିମଗ୍ନ ରହିଲେ । ତପସ୍ୟାରେ ସିଦ୍ଧିଲାଭ କରିବା ପରେ

Digitized by PPRACHIN, SOA

ଏହି ସ୍ଥାନରେ ସେ ଏକ ମଠ ସ୍ଥାପନ କରି ଧର୍ମ ପ୍ରଚାର ଚଳାଇଲେ । କ୍ରମେ ବରଗଛଟିର ଆକ ରକୁ ନେଇ ସ୍ଥାନଟି କୁଞ୍ଜବର ନାମରେ ପରିଚିତ ହେଲା । ଅଦ୍ୟାବଧି ଉକ୍ତ ନାମ ଧାରଣ କରି ଗ୍ରାମଟି ସାଧୁ ସୁନ୍ଦର ଦାସଙ୍କ ମହିମା ଗାନ କରୁଅଛି । ସାଧନାରେ ସିଦ୍ଧିଲାଭ ପରେ ସୁନ୍ଦର ଦାସ, ସାଧୁ ସୁନ୍ଦର ଦାସ ନାମରେ ଲୋକ ମୁଖରେ ଖ୍ୟାତି ଅର୍ଜନ କଲେ ଏବଂ ଉକ୍ତ ମଠ କୁଞ୍ଜବର ମଠ ନାମରେ ପ୍ରସିଦ୍ଧି ଅର୍ଜନ କଲା ।

ସାଧୁ ସୁନ୍ଦର ଦାସଙ୍କ ଦୃଷ୍ଟିରେ ସବୁ ଧର୍ମ ସମାନ ଥିଲା । ସବୁ ଧର୍ମ ପ୍ରତି ସେ ସମାନ ଭାବରେ ଆଦର ପ୍ରଦର୍ଶନ କରୁଥିଲେ । ତାଙ୍କ ପାଇଁ କୁଞ୍ଜବର ମଠ ସର୍ବଧର୍ମ ସମନ୍ୱୟର କେନ୍ଦ୍ରସ୍ଥଳୀରେ ପରିଣତ ହୋଇଥିଲା । ଚତୁର୍ଦ୍ଦିଗରେ ଧୀରେ ଧୀରେ ସାଧୁଙ୍କର ପ୍ରସିଦ୍ଧି ପ୍ରଚାର ଲାଭ କଲା । ବହୁଲୋକ, ଏପରିକି ରାଜା ଓ ଜମିଦାରମାନେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । କିନ୍ତୁ ଜଣେ ସାଧାରଣ ବ୍ୟକ୍ତି ଗଙ୍ଗାଧର ଷଡ଼ଙ୍ଗୀଙ୍କୁ ସେ ତାଙ୍କର ମୁଖ୍ୟ ଶିଷ୍ୟର ଦାୟିତ୍ୱ ପ୍ରଦାନ କରିଥିଲେ । ବିଭିନ୍ନ ଧର୍ମ ଓ ଜାତିର ଲୋକମାନେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ଏବଂ ଧର୍ମ ଓ ଶାନ୍ତିବାଣୀ ପ୍ରଚାର କାର୍ଯ୍ୟରେ ଭାଗ ନେଉଥିଲେ । ଜାତିପ୍ରଥାର ସେ ଥିଲେ ଘୋର ବିରୋଧୀ ।

ରାଜା ରାମମୋହନଙ୍କ ବହୁପୂର୍ବରୁ ସାଧୁ ସୁନ୍ଦର ଦାସ ଥିଲେ ଜଣେ ସମାଜ ସଂସ୍କାରକ । ମୂର୍ତ୍ତିପୂଜା ବା ପ୍ରତିମାପୂଜାର ସେ ଥିଲେ ଘୋର ବିରୋଧୀ । ତାଙ୍କ ମତରେ ବ୍ରହ୍ମ ହିଁ ଏକମାତ୍ର ସତ୍ୟ ( ୩ ) ଜାତିପ୍ରଥାକୁ ସେ ମାନୁ ନ ଥିଲେ । ସବୁ ଜାତିର ଲୋକମାନଙ୍କୁ ସେ ଶିଷ୍ୟ ରୂପେ ଗ୍ରହଣ କରିଥିଲେ । ଉଦାର ମାନବିକତା ଥିଲା ତାଙ୍କର ଧର୍ମ । ବହୁ ସମୟରେ ସେ ଧର୍ମ ଉପଦେଶମାନ ଶୁଣାଇ ଲୋକମାନଙ୍କ ମନକୁ ପବିତ୍ର କରୁଥିଲେ । ସମାଜରେ ସୁସ୍ଥ ବାତାବରଣ ସୃଷ୍ଟି କରିବା ପାଇଁ ଏହା ଥିଲା ତାଙ୍କର ଅନ୍ୟତମ ପ୍ରଚେଷ୍ଟା ।

ଅଶିକ୍ଷା ହିଁ ଲୋକମାନଙ୍କ ସାମାଜିକ ଜୀବନର ଏକମାତ୍ର କଳଙ୍କ ବୋଲି ସାଧୁ ଉପଲବ୍ଧି କରିଥିଲେ । ଏହି ଅଶିକ୍ଷା ପାଇଁ ଲୋକମାନଙ୍କ

Digitized by PPRACHIN, SOA

ମନରେ ବହୁ ଅନ୍ଧବିଶ୍ୱାସ ଓ କୁ-ସଂସ୍କାର ବଥାବାନ୍ଧି ରହିଥିଲା । ତେଣୁ ସେ ତାଙ୍କର ପ୍ରତିଷ୍ଠିତ କୁଞ୍ଜବର ମଠରେ ଏକ ବୈଦାନ୍ତିକ ଶିକ୍ଷାଶ୍ରମ ଖୋଲି ଲୋକମାନଙ୍କୁ ଶିକ୍ଷା ପ୍ରଦାନ କରୁଥିଲେ । ଜଗତର କଲ୍ୟାଣ ପାଇଁ ସାଧୁ ସୁନ୍ଦର ଦାସ ପ୍ରତିବର୍ଷ ବୈଶାଖ ମାସ ଅକ୍ଷୟତୃତୀୟା ଦିନଠାରୁ ସାତଦିନ ଧରି କୁଞ୍ଜବର ମହାଯଜ୍ଞ ଆୟୋଜନ କରୁଥିଲେ । ବ୍ରାହ୍ମଣମାନଙ୍କ ବେଦପାଠ ସାଙ୍ଗକୁ ସାଧୁ ନିଜେ ଧର୍ମ ଉପଦେଶ ସମବେତ ଜନତାଙ୍କୁ ପ୍ରଦାନ କରୁଥିଲେ । ଶହ ଶହ ଭକ୍ତଙ୍କ ପାଇଁ ପ୍ରସାଦର ବ୍ୟବସ୍ଥା କରାଯାଉଥିଲା । ଏହି ଯଜ୍ଞ ସମ୍ପର୍କରେ ସେ କହିଥିଲେ—"ମୁଁ ଏହି ଯଜ୍ଞ ମୋର ନିଜ ପାଇଁ କରୁନାହିଁ । ଏହା ଜଗତର ମଙ୍ଗଳ ନିମନ୍ତେ କରାହୋଇଅଛି ।" ( ୪ )

ସାଧୁ ସୁନ୍ଦର ଦାସ ଥିଲେ ଜଣେ ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତି । ରାଜା ରାମମୋହନଙ୍କ 'ସମ୍ବାଦ କୌମୁଦୀ' ସମ୍ବାଦପତ୍ର ପ୍ରକାଶନର ବହୁ ପୂର୍ବରୁ ସାଧୁ ସୁନ୍ଦର ଦାସ ଏକ ହାତଲେଖା ସମ୍ବାଦପତ୍ର ପ୍ରକାଶ କରିଥିଲେ, ତାର ନାମ ରଖିଥିଲେ 'କୁଞ୍ଜବର ପତ୍ର' । ଏହା କେତେବେଳେ ତାଳପତ୍ରରେ ତ କେତେବେଳେ କାଗଜରେ ଲେଖା-ଯାଉଥିଲା । ମୁଦ୍ରଣ ଯନ୍ତ୍ର କ'ଣ ତାହା ସେତେବେଳେ ଲୋକମାନେ ଜାଣି ନଥିଲେ । ବହୁ ଶ୍ରମ ସ୍ୱୀକାର କରି 'କୁଞ୍ଜବର ପତ୍ର'କୁ ହାତରେ ଲେଖା ଯାଉଥିଲା । ତେଣୁ ଏହା କେତେବେଳେ ପାକ୍ଷିକ ତ ପୁଣି କେତେବେଳେ ସାପ୍ତାହିକ ଓ ସମୟ ମିଳିଲେ ଦୈନିକ ରୂପରେ ମଧ୍ୟ ପ୍ରକାଶ ପାଉଥିଲା । ନିଜେ ସାଧୁ ସୁନ୍ଦର ଦାସ ଥିଲେ ଏହାର ସମ୍ପାଦକ ଓ ତାଙ୍କର ଦୁଇଜଣ ପ୍ରିୟ ଶିଷ୍ୟ ଗଙ୍ଗାଧର ଷଡ଼ଙ୍ଗୀ ଓ ରାମଚନ୍ଦ୍ର ଯାଚକ ସହକାରୀ ସମ୍ପାଦକଭାବେ ସାଧୁ ସୁନ୍ଦରଙ୍କୁ ସାହାଯ୍ୟ କରୁଥିଲେ । ଏଥିରେ ରାଜନୀତି, ଅର୍ଥନୀତି, ସମାଜ ସଂସ୍କାର ଓ ଧର୍ମୀୟ ଆଲୋଚନାମାନ ପ୍ରକାଶ ପାଉଥିଲା । ଖ୍ରୀଷ୍ଟ ଓ ଖ୍ରୀଷ୍ଟଧର୍ମ ସମ୍ପର୍କରେ ମଧ୍ୟ ବିଶଦ ଆଲୋଚନା ପ୍ରକାଶ କରାଯାଉଥିଲା । କେତେକ ସ୍ଥଳରେ ସରକାରଙ୍କ କାର୍ଯ୍ୟକଳାପ ଓ ଅର୍ଥଗୃଧ୍ନୁ ମଠ ମହନ୍ତଙ୍କର କାର୍ଯ୍ୟ-କଳାପକୁ ସମାଲୋଚନା କରାଯାଉଥିଲା ।

Digitized by PPRACHIN, SOA

ଉତ୍କଳରେ ଶିକ୍ଷାର ପ୍ରସାର ପାଇଁ ଏହି ସମ୍ବାଦପତ୍ର ମାଧ୍ୟମରେ ସରକାରଙ୍କୁ ଅନୁରୋଧ କରାଯାଉଥିଲା । ଗଡ଼ଜାତର ରାଜା, ମହାରାଜା ଓ କଟକର ସର୍ବସାଧାରଣ ଓ ମିଶନାରୀମାନଙ୍କ ମଧ୍ୟରେ ଏହି 'କୁଜାବର ପତ୍ର'ର ଆଦର ଥିଲା ସର୍ବାଧିକ । ଏପରିକି ମିଶନାରୀମାନେ ଏହି ସମ୍ବାଦପତ୍ରର କେତେ ଅଂଶକୁ ଇଂରାଜୀ ଭାଷାରେ ଅନୁବାଦ କରି ଇଂଲଣ୍ଡକୁ ମଧ୍ୟ ପଠାଉଥିଲେ । ସବୁ ଧର୍ମକୁ ସାଧୁ ସୁନ୍ଦର ଦାସ ଉଦାର ହୃଦୟରେ ଗ୍ରହଣ କରିଥିବାରୁ ଏବଂ ଖ୍ରୀଷ୍ଟଧର୍ମ ପ୍ରତି ତାଙ୍କ ମନରେ କୌଣସି ବିତୃଷ୍ଣା ଭାବ ନଥିବାରୁ ମିଶନାରୀମାନେ ତାଙ୍କ ପ୍ରତି ଆକୃଷ୍ଟ ହୋଇ 'କୁଜାବର ମଠ'କୁ ଆସୁଥିଲେ ଏବଂ ସାଧୁ ସୁନ୍ଦରଙ୍କ ଧର୍ମ ଆଲୋଚନା ସଭାମାନଙ୍କରେ ଯୋଗ ଦେଉଥିଲେ । ସାଧୁଙ୍କର ଖ୍ରୀଷ୍ଟଧର୍ମ ପ୍ରତି ଆଦର ଥିଲା ସତ; କିନ୍ତୁ ସେ ତାହାକୁ ଗ୍ରହଣ କରି ନଥିଲେ । ମିଶନାରୀମାନେ ତାଙ୍କୁ ଧର୍ମାନ୍ତରିତ କରିନପାରି ତାଙ୍କର ଶିଷ୍ୟମାନଙ୍କ ଉପରେ ପ୍ରଭାବ ବିସ୍ତାର କରିବାକୁ ଚେଷ୍ଟା କଲେ । ଏଥିରେ ସେମାନେ ସଫଳ ହେଲେ । ସାଧୁ ସୁନ୍ଦରଙ୍କର ପ୍ରିୟ ଶିଷ୍ୟ ଗଙ୍ଗାଧର ଷଡ଼ଙ୍ଗୀ ଓ ରାମଚନ୍ଦ୍ର ଯାଚକ ଖ୍ରୀଷ୍ଟଧର୍ମ ଗ୍ରହଣ କଲେ । ଫଳରେ ସାଧୁ ସୁନ୍ଦର ଦାସ ଓ ମିଶନାରୀମାନଙ୍କ ମଧ୍ୟରେ ବିବାଦର ସୂତ୍ରପାତ ହେଲା ଏବଂ ମାଲିମକଦ୍ଦମା ପର୍ଯ୍ୟନ୍ତ ମଧ୍ୟ କଥା ଗଡ଼ିଗଲା । ଶେଷରେ ସାଧୁ ସୁନ୍ଦର ଦାସଙ୍କର ବିଜୟ ହେଲା ।

ସାଧୁ ସୁନ୍ଦର ଦାସଙ୍କ କାର୍ଯ୍ୟକଳାପ ଓ ଦୂରଦୃଷ୍ଟି କୌଣସି ଗୁଣରେ ରାଜା ରାମମୋହନ ରାୟଙ୍କଠାରୁ କମ୍ ନଥିଲା । ରାମମୋହନ ଯାହା କରିଯାଇଛନ୍ତି ତା'ର ବହୁପୂର୍ବରୁ ସେ ଏସବୁ କାର୍ଯ୍ୟ କରିଥିଲେ ମଧ୍ୟ ପ୍ରଚାରର ଅଭାବରୁ ସେ ସମୟ ଗର୍ଭରେ ବିସ୍ମୃତ ହୋଇଯାଇଛନ୍ତି । ତାଙ୍କୁ ପ୍ରଶଂସା କରି Mr. John Brown Myers ଲେଖିଛନ୍ତି—
"He became a Hindu reformer and by his strong personal force and spiritual magnetism attracted as many as five hundred disciples." (୫)

ରାଜା ରାମମୋହନ ରାୟ, କେଶବ ଚନ୍ଦ୍ର ସେନ ଓ ଦୟାନନ୍ଦ ସରସ୍ୱତୀଙ୍କ ବହୁପୂର୍ବରୁ ସାଧୁ ସୁନ୍ଦର ଧର୍ମ ସଂସ୍କାର ଓ ସମାଜ ସଂସ୍କାର

Digitized by PPRACHIN, SOA

କ୍ଷେତ୍ରରେ କାମକରି ସଫଳତା ପାଇ ପାରିଥିଲେ । ସେ କେବଳ ସଂସ୍କାରକ ନଥିଲେ, ଜଣେ ସ୍ୱାଧୀନଚେତା, ଦୃଢ଼ମନା, ସାହସୀ ଓ ବୀର ଥିଲେ । ଓଡ଼ିଶାରେ ସମ୍ବାଦପତ୍ର ପ୍ରକାଶ କରିବାରେ ସେ ଥିଲେ ପଥ ପ୍ରଦର୍ଶକ । ତେଣୁ ଓଡ଼ିଶାରେ କାହିଁକି, ସେ ଥିଲେ ଊନବିଂଶ ଶତାବ୍ଦୀର ଭାରତରେ ଜଣେ ମହାମନୀଷୀ ।

ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ
ବି. ବି. ମହାବିଦ୍ୟାଳୟ, ଚଣ୍ଡିଖୋଲ

## ସହାୟକ ସୂଚନାପଞ୍ଜୀ

୧ । ଓଡ଼ିଶାର ବିକାଶରେ ପତ୍ରପତ୍ରିକାର ପ୍ରଭାବ, ଡକ୍ଟର ଗୋପାଳ ଚନ୍ଦ୍ର ମିଶ୍ର, ପୃ-୮, ୧୯୭୯

୨ । ଲୁଜାବର ପବ୍ଲିକେଶନ, ପାମ୍ପଲେଟ ନମ୍ବର-୭, ୧୯୪୮, କଟକ ପୃଷ୍ଠା-୯ ·

୩ । O. H. R. J. Vol. XXIV, XXV & XXVI ଭୁବନେଶ୍ୱର ୧୯୮୦, ପୃଷ୍ଠା-୧୨୪

୪ । ଲୁଜାବର ପବ୍ଲିକେଶନ, ପାମ୍ପଲେଟ ନମ୍ବର-୭, ୧୯୪୮ କଟକ, ପୃ-୧୦ ।

୫ । Centenary Volume of the Baptist Missionary Society, London, (1792-1892) Page-252.



Digitized by PPRACHIN, SOA

# ସାଧୁ ସୁନ୍ଦର ଦାସ ଓ କୁଜୀବର

ମମତା ବଡଶୋଇ

ଧର୍ମଭିତ୍ତିକ ବସ୍ତୁ ଭାବରେ ଉତ୍କଳ ବା ଓଡ଼ିଶା ଯୁଗଯୁଗ ଧରି ଖ୍ୟାତି ଲଭି ଆସିଅଛି । ସମୟାନୁକ୍ରମେ ମଧ୍ୟ ବହୁ ସାଧୁ, ତପସ୍ୱୀ, ଧର୍ମପ୍ରଚାରକ, କବି ଓ ସମାଜ ସଂସ୍କାରକ ସ୍ୱ ସ୍ୱ ଉପାସନାର ମାର୍ଗରେ ଏହି ପବିତ୍ର ଭୂମିକୁ ମହିମାନ୍ୱିତ କରି ଆସିଛନ୍ତି । ସେହି ମହାତ୍ମାମାନଙ୍କ ମଧ୍ୟରେ ଚୌଦୁଆର ନିକଟସ୍ଥ ପ୍ରସିଦ୍ଧ 'କୁଜୀବର ମଠ'ର ପ୍ରତିଷ୍ଠାତା ସାଧୁ ସୁନ୍ଦର ଦାସ ଅନ୍ୟତମ । ସେ ଥିଲେ ଏକାଧାରରେ ଜଣେ ଯୋଦ୍ଧା, ତପସ୍ୱୀ, ସାଧକ, ବୈଦାନ୍ତିକ ଋଷି, ସମାଜ ସଂସ୍କାରକ ଓ ଦେଶୀୟ ଭାଷାରେ ପ୍ରଥମ ଖବରକାଗଜ (ହସ୍ତଲିପି)ର ପ୍ରକାଶକ । କେବଳ ଓଡ଼ିଶାରେ ନୁହେଁ, ପ୍ରକୃତ ଅର୍ଥରେ କହିବାକୁ ଗଲେ, "ସେ ଥିଲେ ଊନବିଂଶ ଶତାବ୍ଦୀରେ ଭାରତର ପ୍ରଥମ ମହାମନୀଷୀ ।" (୧) କିନ୍ତୁ ଅତି କ୍ଷୋଭର ବିଷୟ ଯେ ଏହି ସିଦ୍ଧ ପୁରୁଷଙ୍କର ଜୀବନୀ ସମ୍ବନ୍ଧରେ ଏ ପର୍ଯ୍ୟନ୍ତ ବିଶେଷ ଆଲୋକପାତ କରାଯାଇ ନାହିଁ; କିନ୍ତୁ ଏହା ଧ୍ରୁବ ସତ୍ୟ ଯେ ଏହି କର୍ମବୀର ସମାଜ ସଂସ୍କାରକଙ୍କର ଜୀବନୀ ଆଲୋଚନା କଲେ, ନିଃସନ୍ଦେହରେ ଓଡ଼ିଆ ବିଦଗ୍ଧମାନଙ୍କ ପାଇଁ ତାହା ହେବ ଏକ ପ୍ରେରଣା ର ଉତ୍ସ ।

## ଜୀବନର ପ୍ରଥମାବସ୍ଥାରେ ସାଧୁ ସୁନ୍ଦର ଦାସ :

ସାଧୁ ସୁନ୍ଦର ଦାସଙ୍କର ଜନ୍ମ ହୋଇଥିଲା ୧୭୨୦ ମସିହାରେ କଟକ ଜିଲ୍ଲା ଅନ୍ତର୍ଗତ ଆଠଗଡ଼ ରାଜ୍ୟର କୁମାରପୁର ବା କୁଆଁରପୁର ଗ୍ରାମର ଏକ ସୂର୍ଯ୍ୟବଂଶୀୟ କ୍ଷତ୍ରିୟ କୁଳରେ । (୨) ବାଲ୍ୟ କାଳରୁ ମାତୃପିତୃହୀନ ହୋଇ ବୁଢ଼ା ବଡ଼ବାପାଙ୍କର ଯତ୍ନରେ ଲାଳିତପାଳିତ ହୋଇ ଗ୍ରାମ୍ୟ ପାଠଶାଳା ବା ଚାଟଶାଳୀରେ ଅଧ୍ୟୟନ ଆରମ୍ଭ କଲେ । ବାଲ୍ୟବସ୍ଥାରୁ ଏକାକୀ ବସି ଚିନ୍ତାମଗ୍ନ ରହିବା, ପ୍ରତିବେଶୀମାନଙ୍କ ହିତ

Digitized by PPRACHIN, SOA

କାର୍ଯ୍ୟରେ ଲିପ୍ତ ରହିବା, ଅନ୍ୟାୟ କାର୍ଯ୍ୟରେ ପ୍ରତିବାଦ କରିବା, ସମସ୍ତଙ୍କୁ ସମଦୃଷ୍ଟିରେ ଦେଖିବା, ସାଙ୍ଗ ସାଥୀଙ୍କ ମଧ୍ୟରେ ସର୍ଦ୍ଦାର ହେବା, ବନ୍ୟଜନ୍ତୁ ଶିକାର କରିବା, ଦରିଦ୍ରଙ୍କ ଦୁଃଖରେ ଦୁଃଖୀ ହେବା ସଙ୍ଗେ ସଙ୍ଗେ ସମବେଦନା ଜ୍ଞାପନ କରିବା ଏବଂ ସର୍ବୋପରି ସମସ୍ତ ପ୍ରକାର ଭେଦଭାବ ଭୁଲି କର୍ତ୍ତବ୍ୟ ଜ୍ଞାନରେ ସମସ୍ତେ ସମସ୍ତଙ୍କର ଭାଇ ଓ ଭଉଣୀ ଅଟନ୍ତି; ଏହାହିଁ ଥିଲା ତାଙ୍କ ପ୍ରଥମାବସ୍ଥାର ମୌଳିକ ପରିଚୟ । (୩) ତତ୍‌ପରେ ଆଠଗଡ଼ ରାଜ୍ୟ ସ୍କୁଲ ଓ ସଂସ୍କୃତ ଟୋଲରେ ଶିକ୍ଷା ସମାପ୍ତ କରି ଆଠଗଡ଼ ରାଜ ଦରବାରରେ ପ୍ରଥମେ ସାମାନ୍ୟ ସୈନିକ ଭାବେ ଦେଶସେବା ପାଇଁ ଯୋଗ ଦେଲେ । ନିଜର ଆତ୍ମଚେଷ୍ଟା ଓ ବିଚକ୍ଷଣ ବୁଦ୍ଧି ପ୍ରଭାବରେ ସୈନିକ ସୁନ୍ଦର ଦାସ ହିନେ ହେଲେ ଗଡ଼ଜାତର ସେନାନାୟକ ।

ମାତ୍ର ହଠାତ୍ ଦିନେ ଏହି ପ୍ରଖ୍ୟାତ ସେନାନାୟକଙ୍କ ଜୀବନର ମୋଡ଼ ବଦଳିଗଲା ଏକ ଅଲୌକିକ ତଥା ରୋମାଞ୍ଚକର ଘଟଣା ପରେ ତାହା ନିହିତ ଅଛି "ଏକଦା ଜଣେ ଶିକାରୀର ଆତ୍ମଗର୍ବ ନେଇ ସୁନ୍ଦର ଦାସ ଡାଳିଯୋଡ଼ା ନିକଟ ଜଙ୍ଗଲରେ ଏକ ମୃଗକୁ ଶରବିଦ୍ଧ କରିବାରୁ ମୃଗଟି ଶରାହତ ହୋଇ ଭୂମିରେ ପତିତ ହେବାମାତ୍ରେ 'ରାମନାମ' ଉଚ୍ଚାରଣ କଲା ଓ ତତ୍‌କ୍ଷଣାତ୍ ଏକ ଅପୂର୍ବ ଜ୍ୟୋତିର୍ମୟ ରୂପର ଆବିର୍ଭାବ ହେବା ସଙ୍ଗେ ସଙ୍ଗେ ଶୂନ୍ୟବାଣୀ ହେଲା ଯେ ବିନା କାରଣରେ ଜୀବହିଂସା କରନାହିଁ, ତୁମେ ଏ ପଥର ପଥିକ ନୁହଁ । ଧର୍ମ ଓ ସତ୍ୟପଥର ପଥିକ ତୁମେ । ମୋଠାରେ ଭକ୍ତି କର, ମୋର ଆଶୀର୍ବାଦ ଲାଭ କରିବ ।" (୪) ଏହି ଗୁରୁଗମ୍ଭୀର ସ୍ୱର ଶୁଣି ଶିକାରୀ ସୁନ୍ଦର ଦାସ ସ୍ତମ୍ଭୀଭୂତ ହେଲେ । ଠିକ୍ ଏହିପରି ଏକ ଘଟଣା ଏକଦା ସନ୍ଧ୍ୟାରେ ଘଟିଥିଲା ଡାମାସ୍କସ୍ (ବାଗଦାଦ ନିକଟରେ) ନଗରରେ ସାଧୁ ସେଣ୍ଟପଲଙ୍କ ଜୀବନରେ । ସେ ଯା' ହେଉନା କାହିଁକି, ଏହି ଶୂନ୍ୟବାଣୀ ଘ ଇବାର କିଛିଦିନ ପରେ ତତ୍‌କାଳୀନ ଓଡ଼ିଶା ଗଡ଼ଜାତର ସୁନାମଧନ୍ୟ ସେନାନାୟକ ସୁନ୍ଦର

Digitized by PPRACHIN, SOA

ଦାସ ଧନୁଶର ଓ ଗୁଳିଗୋଳା ପରିତ୍ୟାଗ କରିବା ସଙ୍ଗେ ସଙ୍ଗେ ପଦରୁ ଇସ୍ତଫା ଦେଇ ଧର୍ମପଥରେ ବ୍ରତୀ ହେଲେ ।

## ଜୀବନର ଦ୍ୱିତୀୟାବସ୍ଥାରେ ସାଧୁ ସୁନ୍ଦର ଦାସ

ଶୂନ୍ୟବାଣୀ ପାଇବାର କିଛିଦିନ ପରେ ପାର୍ଥିବ ଜଗତର ସମସ୍ତ ମୋହ, ମାୟା ଓ ବନ୍ଧନକୁ ପରିତ୍ୟାଗ କରି କଟକ ଜିଲ୍ଲା ଅନ୍ତର୍ଗତ 'କୁଜଙ୍ଗ' ନାମକ ଏକ ଗ୍ରାମର "କୁଜଙ୍ଗବର" ନାମକ ଏକ ବିଶାଳ ବଟବୃକ୍ଷ ମୂଳେ ସୁନ୍ଦର ଦାସ ତପସ୍ୟାରତ ହୋଇ ସିଦ୍ଧିଲାଭ କଲେ । (୬) ଏଠାରେ ସ୍ମରଣ କରାଯାଇପାରେ ଯେ ଆଠଗଡ଼ ରାଜ୍ୟ ସଂସ୍କୃତ ଟୋଲ ପର୍ଯ୍ୟନ୍ତ ଶିକ୍ଷା ସମାପ୍ତ କରିଥିବା ସୁନ୍ଦର ଦାସ ଏହି ତପସ୍ୟା କରିବା ସମୟରେ ଭାଗବତ, ଗୀତା, ସିଦ୍ଧବାକ୍ୟ, ବେଦ, ବେଦାନ୍ତ, ରାମାୟଣ, ମହାଭାରତ, ମାଳିକା, ନ୍ୟାୟତନ୍ତ୍ର, ଦର୍ଶନ, ସାଂଖ୍ୟ, ଯୋଗ, ପାତଞ୍ଜଳୀ ଓ ତର୍କଶାସ୍ତ୍ରର ଆଲୋଚନା କରିବା ସହିତ ପୂର୍ବବର୍ତ୍ତୀ ସାଧକ ଓ ଯୋଗୀଗଣଙ୍କ ପଥ ବିଶ୍ଳେଷଣ କରି ପାଣ୍ଡିତ୍ୟ ଲାଭ କରିଥିଲେ । (୭) ସାଧୁଙ୍କ ମତରେ ସର୍ବଧର୍ମର ମୂଳମନ୍ତ୍ର ଏକ ଅଟେ । ଯେପରି ନଦୀ ବିଭିନ୍ନ ସ୍ଥାନରୁ ପ୍ରବାହିତ ହୋଇ ମହାସାଗରରେ ହୁଏ ତା'ର ମିଳନ; ଠିକ୍ ସେହିପରି ଯେକୌଣସି ମାନବ ଯେଉଁ ବାଟେ ଯାଉନା କାହିଁକି ସମସ୍ତଙ୍କୁ ଦିନେ ସେହି ପରମେଶ୍ୱରଙ୍କ ପଦାରବିନ୍ଦରେ ଲୀନ ହେବାକୁ ପଡ଼ିବ । ସେଥିପାଇଁ ସମସ୍ତ ମାନବ ଭଗବତ୍ ପଦାରବିନ୍ଦରେ ଧ୍ୟାନ ରଖି ଜାତିର ହିତ କାମନାରେ ବ୍ରତୀ ହେବା ହିଁ ଶ୍ରେୟସ୍କର । ସାଧୁଙ୍କ ମତରେ 'ବ୍ରହ୍ମ' ହିଁ ଏକମାତ୍ର ସତ୍ୟ । (୮) ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ତତ୍କାଳୀନ ସମାଜର ଲୋକମାନେ ବିଭିନ୍ନ ଧର୍ମର ଦ୍ୱନ୍ଦ୍ୱମୂଳକ ମତରୁ ନିବୃତ୍ତ ରହିବାପାଇଁ ଚାହୁଁଥିବା ସମୟରେ ସାଧୁ ସୁନ୍ଦରଙ୍କର ବିଭିନ୍ନ ଧର୍ମର ଉକ୍ତ ବିଶ୍ଳେଷଣ ଜନସାଧାରଣଙ୍କୁ ବହୁଳ ଭାବରେ ଆକୃଷ୍ଟ କଲା । (୯) ବହୁ ରାଜା ଓ ମହାରାଜା, ଧନୀ ଏବଂ ନିର୍ଦ୍ଧନ ସମସ୍ତେ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରରୁ ଏହି ମହାପୁରୁଷଙ୍କର ଧର୍ମୋପଦେଶ ଶୁଣିବାପାଇଁ କୁଜଙ୍ଗବରଠାରେ ରୁଣ୍ଡ ହେଲେ । ଏଠାରେ

Digitized by PPRACHIN, SOA

ବର୍ଣ୍ଣା ଯାଇପାରେକ, ସେ ସମୟର ଓଡ଼ିଶା ଥିଲା ମରହଟ୍ଟାମାନଙ୍କ ଶାସନାଧୀନ । ସେ ଯା' ହେଉନା କାହିଁକି, ଏହି ପ୍ରକଟିଟ୍ରି ବଳରେ ସାଧୁ ସୁନ୍ଦର ଦାସ ଗଣ୍ୟମାନ୍ୟ ତଥା ସାଧାରଣଙ୍କ ଦୃଷ୍ଟିଗୋଚର ହେଲେ ଏବଂ ସେମାନେ ଏହି ମହାତ୍ମାଙ୍କ ଉପାସନା ପଦ୍ଧତିରେ ଆକୃଷ୍ଟ ହୋଇ ଶିଷ୍ୟତ୍ୱ ଗ୍ରହଣକରିବା ସଙ୍ଗେସଙ୍ଗେ ତାଙ୍କୁ ଧର୍ମପିତା (Spiritual father) ରୂପେ ଆଖ୍ୟା ଦେଲେ । (୧୦) ବିଶେଷ କରି ରାଜା ଓ ମହାରାଜାମାନେ ଏହି ମହାପୁରୁଷଙ୍କ ଉପାସନା ପଦ୍ଧତିରେ ସନ୍ତୁଷ୍ଟ ହୋଇ ଐଶ୍ୱର୍ଯ୍ୟ ଦାନ କରିବାକୁ ଇଚ୍ଛା ପ୍ରକାଶ କରିବାରୁ ସାଧୁ ଉକ୍ତ ଦାନକୁ ଗ୍ରହଣ କରିବାପାଇଁ ନିଜର ଅସମର୍ଥତା ପ୍ରକାଶ କରି ସେମାନଙ୍କୁ ଉପଦେଶ ଦେଲେ ଯେ, "ଜ୍ଞାନ ହିଁ ସତ୍ୟ ଓ ସର୍ବଶ୍ରେଷ୍ଠ ଧନ ଅଟେ, ଏହାର ଆଦର କର । ସମ୍ମୁଖରେ ଦେଖ, ପୁରୀରେ ସାଧୁ ମହନ୍ତମାନେ, ଧନ, ଜମି, କୋଠାବାଡ଼ି ଆଦି କରି ରହିଛନ୍ତି, ସେମାନେ କି ପ୍ରକାର ଅନୀତି କାର୍ଯ୍ୟ କରି କଳୁଷିତ ହେଉଅଛନ୍ତି । ସେହିପରି ତୁମ୍ଭମାନଙ୍କଠାରୁ ଧନ ନେଇ ସଞ୍ଚିତ କରି ରଖିଲେ ଭବିଷ୍ୟତରେ ଏହି ସ୍ଥାନ ମହନ୍ତମାନଙ୍କ ମଠ ସଦୃଶ ଲୀଳା ଭୂମିରେ ପରିଣତ ହୋଇ ଏହାର ପବିତ୍ରତା ନଷ୍ଟ କରିବ ଓ ଏ ଯୋଗକ୍ଷେତ୍ର କଳୁଷିତ ହେବ ।" (୧୧) ଏହି ମହାନୁଭବଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ବ୍ରାହ୍ମଣ ଶାସନ (କୁଳୀବରଠାରୁ ତିନି ମାଇଲ ଦୂର)ର ଗଙ୍ଗାଧର ଷଡ଼ଙ୍ଗୀ ଥିଲେ ମୁଖ୍ୟ ।

ରାମଚନ୍ଦ୍ର ଯାଚକ, ବୈତାରୀ, ବାମଦେବ, ଗଙ୍ଗା ମହାନ୍ତି, ଜଗନ୍ନାଥ ପଟ୍ଟନାୟକ, ଗଙ୍ଗାଧର ବିଶ୍ୱାଳ, କୃପାସିନ୍ଧୁ ସାହୁ, ରଘୁ ଦାସ, ସୁଦର୍ଶନ ରାଉତ, ରାମକୃଷ୍ଣ ଦାସ ଓ ପରମେଶ୍ୱର ମଲ୍ଲ ପ୍ରଭୃତି ପ୍ରଚାର କାର୍ଯ୍ୟ କରୁଥିଲେ ।

## ଶିଷ୍ୟଗଣଙ୍କୁ ସାଧୁଙ୍କର ଉପଦେଶାବଳୀ

ସାଧୁଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ରସିଦ୍ଧ 'କୁଳୀବର ମଠ' ଉପରେ ଆଲୋକପାତ କରିବା ପୂର୍ବରୁ ସମସ୍ତ ଧର୍ମାତ୍ମାଙ୍କ ଭଳି ସାଧୁ ସୁନ୍ଦର ଦାସ

Digitized by PPRACHIN, SOA

ତାଙ୍କ ଶିଷ୍ୟମାନଙ୍କୁ ନିର୍ଦ୍ଦେଶିତ ଉପଦେଶାବଳୀ ନିମ୍ନରେ ପ୍ରଦତ୍ତ ହେଲା ।

୧ । ମୂର୍ତ୍ତି ବା ପ୍ରତିମା ପୂଜାର ନିଷେଧ ।
୨ । 'ବ୍ରହ୍ମ'ଙ୍କୁ ପୂଜା କର ଯେ କି, ଏକମାତ୍ର ସତ୍ୟ ।
୩ । ଜାତିପ୍ରଥା ନିଷେଧ ।
୪ । ପ୍ରାତଃସ୍ନାନ ବାଞ୍ଛନୀୟ ।
୫ । ତୈଳ, ତମାଖୁ ଓ ମଦ୍ୟପାନରୁ ନିବୃତ୍ତ ହେବା ସଙ୍ଗେ ସଙ୍ଗେ ଆମିଷାହାର ବାରଣ ।
୬ । ବିନା କାରଣରେ ଜୀବହିଂସା କର ନାହିଁ ।
୭ । ଶତ୍ରୁମାନଙ୍କୁ ବନ୍ଧୁପରି ଦେଖ । (୧୨)
୮ । ପିତାମାତାଙ୍କୁ ଭକ୍ତି କର ।
୯ । ପିତାମାତାଙ୍କ ପରି ବୃଦ୍ଧ ଲୋକମାନଙ୍କୁ ଭକ୍ତି କର ।
୧୦ । ସ୍ତ୍ରୀ ଓ ପିଲାମାନଙ୍କୁ ନିଜର ଆତ୍ମା ସଦୃଶ ଭଲପାଅ ।
୧୧ । ଅସତ୍ ସାଙ୍ଗମାନଙ୍କଠାରୁ ଦୂରରେ ରୁହ ।
୧୨ । ମିଥ୍ୟା ବାକ୍ୟ କୁହ ନାହିଁ ଓ ପରଦ୍ରବ୍ୟ ଅପହରଣ କର ନାହିଁ ।
୧୩ । ସତ, କୁତ୍ସାତ୍ମକ ମିଥ୍ୟା ସାକ୍ଷ୍ୟରୁ ନିବୃତ୍ତ ରୁହ ।
୧୪ । ଦୁଃଖୀ ଦରିଦ୍ରଙ୍କୁ ସାହାଯ୍ୟ କର; ଯଦି ଅସମର୍ଥ; ତେବେ ମିଷ୍ଟ ଭାଷାରେ ତାଙ୍କୁ ସନ୍ତୁଷ୍ଟ କର ।

ଏତଦ୍‌ବ୍ୟତୀତ କର୍ତ୍ତବ୍ୟ ସାଧନରେ କ୍ଷମତାକୁ ନୈବେଦ୍ୟ ରୂପେ ଅର୍ପଣ କରିବା ଉପରେ ସାଧୁଙ୍କର ଥିଲା ଦୃଢ଼ ବିଶ୍ବାସ ।

## କୁଜୀବର ମଠ

ଆଗରୁ ଉଲ୍ଲେଖ ହୋଇଅଛି ଯେ ସାଧୁ ସୁନ୍ଦର ଦାସ 'କୁଜୀ' ନାମକ ଗ୍ରାମର "କୁଜୀବର" ନାମକ ନାତି-ଉଚ୍ଚ ବଟବୃକ୍ଷ ମୂଳେ ତପସ୍ୟାରତ ହୋଇ ସିଦ୍ଧିଲାଭ କରିଥିଲେ ଏବଂ ପରିଶେଷରେ ସେ ସ୍ଥାନ ଏକ ସର୍ବଧର୍ମ-ସମନ୍ୱୟର କେନ୍ଦ୍ର ରୂପେ ପ୍ରସିଦ୍ଧି ଲାଭ କରିବା

Digitized by PPRACHIN, SOA

ସଙ୍ଗେ ସଙ୍ଗେ 'କୁଜୀବର ମଠ' ନାମରେ ସର୍ବାଦୃତ ହେଲା । ଏହି ସ୍ଥାନଟି ଅତି ସୁରମ୍ୟ, ନିର୍ଜନ ଓ ବୃକ୍ଷବହୁଳ ଅଟେ । ଯେ ପ୍ରକାର ଫଲ୍‌ଗୁ ନଦୀ ଗୟାର ବୋଧିଦ୍ରୁମ ନିକଟରେ ପ୍ରବାହିତ ହେଉଅଛି ଠିକ୍ ସେହିପରି କପିଳାସ କନ୍ଦରରୁ 'ଗନ୍ଧନଦୀ' କଳକଳ ନାଦରେ ପ୍ରବାହିତ ହୋଇ ବିରୂପା ବା ଚନ୍ଦ୍ରୋତ୍ପଳା ନଦୀରେ ମିଶି ଏହି ସ୍ଥାନଟିକୁ ଅଧିକ ପ୍ରାଣବନ୍ତ, ସୌନ୍ଦର୍ଯ୍ୟମୟ ଓ ପ୍ରାକୃତିକ ପରିଶଯ୍ୟାରେ ପରିଣତ କରିଅଛି । ମିଶନାରୀମାନେ ଏହି ଧର୍ମପୀଠକୁ ଅତି ପବିତ୍ର, ଉଚ୍ଚନୈତିକ ଆଦର୍ଶର ଶୀର୍ଷସ୍ଥାନ ଓ ଈଶ୍ବର ପ୍ରାପ୍ତିର ଚରମ ରମ୍ୟସ୍ଥଳୀ ବୋଲି କହିଅଛନ୍ତି । ସଟନ ଏହି ସ୍ଥାନଟି ଉପରେ ଦୃଷ୍ଟିପାତ କରି ଲେଖିଅଛନ୍ତି "It is a true picture of the moral world in heathen lands of Utkal" (୧୩)

## କୁଜୀବର ମହାଯଜ୍ଞ

ଏହି ପବିତ୍ର ପୀଠରେ ପ୍ରତିବର୍ଷ ବୈଶାଖ ମାସ ଅକ୍ଷୟ ତୃତୀୟା ଠାରୁ ଊର୍ଦ୍ଧ୍ୱ ସାତଦିନ ପର୍ଯ୍ୟନ୍ତ ସାଧୁ ସୁନ୍ଦର ଦାସ ଏକ ବିରାଟ ଯଜ୍ଞ କରୁଥିଲେ ଯାହାକି "କୁଜୀବର ମହାଯଜ୍ଞ" ନାମରେ ପରିଚିତ । (୧୪) ପ୍ରତ୍ୟେକ ଦିନ ୨୧ ସେର ଘୃତ ଆହୂତି ଦେବା ସଙ୍ଗେ ସଙ୍ଗେ ବ୍ରାହ୍ମଣ-ମାନଙ୍କର ବେଦପାଠ ଓ ୩୦୦୦୦ ଲୋକଙ୍କର ଭୂରି ଭୋଜନର ବ୍ୟବସ୍ଥା ଥିଲା । ଯଜ୍ଞସ୍ଥଳୀଟି ମେଳା ଓ ପ୍ରଦର୍ଶନୀ ସାଙ୍ଗକୁ ବିବିଧ ବାଦ୍ୟଯନ୍ତ୍ରର ତାଳରେ ମୁଖରିତ ହୋଇ ଉଠୁଥିଲା । ଲକ୍ଷ ଲକ୍ଷ ନରନାରୀଙ୍କ ସମେତ ବହୁ ସାଧୁ, ସନ୍ନ୍ୟାସୀ, ରଜା ଓ ମହାରଜା ଜାତି, ଧର୍ମ ନିର୍ବିଶେଷରେ ନିଜ ନିଜର ଭକ୍ତି ପୁଷ୍ପାଞ୍ଜଳି ସହ ନାନା ପ୍ରକାର ଯଜ୍ଞ ସାମଗ୍ରୀ ଧରି ଯଜ୍ଞ ସ୍ଥଳରେ ରୁଣ୍ଡ ହେଉଥିଲେ । ସାଧୁ ସୁନ୍ଦର ଦାସ ଏହି ଜନତାକୁ ସମ୍ବୋଧନ କରି କହୁଥିଲେ, "ମୁଁ ଏହି ଯଜ୍ଞ ମୋର ନିଜ ପାଇଁ କରୁନାହିଁ, ଏହା ଜଗତର ମଙ୍ଗଳ ନିମନ୍ତେ କରାହେଉଅଛି ।" (୧୫)

ଏଠାରେ ସ୍ମରଣ କରାଯାଇପାରେ କି ଘୋର ଏକ ସପ୍ତାହବ୍ୟାପୀ ଏହି ଯଜ୍ଞ ସମୟରେ ବେଦୀ ଉପରେ ସାଧୁ ଦଣ୍ଡାୟମାନ ହୋଇ ସୂକ୍ଷ୍ମ

Digitized by PPRACHIN, SOA

ଉପଦେଶମାନ ବୈଦାନ୍ତିକ ମତରେ ଦେଉଥିଲେ । ତାଙ୍କର ସର୍ବଶ୍ରେଷ୍ଠ ଉପଦେଶ ଥିଲା, "ଭଗବାନ ହିଁ ଏକମାତ୍ର ଉପାସ୍ୟ" । ସାହେବମାନଙ୍କ ମତରେ, "The Sadhu advised all not to destroy beasts, animals, fishes or birds, or any other thing that has life, not to cut down trees or shrubs, but to consider all things that have life as ourselves, and as one spirit, for that in all substances, and throughout all materiality, Narayan dwells incarnate." (୧୬) ସଠିକ୍ ତଥ୍ୟର ଅଭାବରୁ ଏପରି ଏକ ମହାଯଜ୍ଞ କେବେ ଆରମ୍ଭ ହୋଇଥିଲା ତାହା ନିର୍ଦ୍ଧାରଣ କରିବା ସହଜ ନୁହେଁ । ସେ ଯାହା ହେଉନା କାହିଁକି ସାଧୁ ସୁନ୍ଦର ଦାସଙ୍କ ସ୍ମୃତିକୁ ଅମର ରଖିବା ପାଇଁ ଶିଷ୍ୟମାନେ ତାଙ୍କର ତିରୋଭାବ (ଗ୍ରାହ୍ୟୋତ୍ସବ) ଦିନଟିକୁ "ବଡ଼ଯଜ୍ଞ"ରେ ନାମାଙ୍କିତ କରି ପାଳନ କରୁଅଛନ୍ତି । ଏହି ଯଜ୍ଞ ପ୍ରତିବର୍ଷ ବୈଶାଖ କୃଷ୍ଣସପ୍ତମୀ ଦିନ (ଚୈତ୍ରପୂର୍ଣ୍ଣିମା ପିବାର ୭ ଦିନ) ପାଳିତ ହୁଏ । ଏହାଛଡ଼ା ସାଧୁ ସୁନ୍ଦର ଅନ୍ୟ ଏକ ଯଜ୍ଞ ମାଘ ମାସରେ ପାଳନ କରୁଥିଲେ ବୋଲି ମିଶନାରୀମାନଙ୍କ ରିପୋର୍ଟରେ ଉଲ୍ଲେଖ ଅଛି ।

## ବୈଦାନ୍ତିକ ଶିକ୍ଷାନୁଷ୍ଠାନ

ସାଧୁ ସୁନ୍ଦର ଦାସଙ୍କ ସର୍ବଧର୍ମ ସମନ୍ୱୟର ପୀଠ (କୁଞ୍ଜବର ମଠ)ଠାରେ ଏକ ବୈଦାନ୍ତିକ ଶିକ୍ଷାନୁଷ୍ଠାନ (A Theological Centre of Education) ଥିଲା । (୧୭) ଏଥିରେ ପାଞ୍ଚଶତରୁ ଅଧିକ ଶିଷ୍ୟ ବୈଦାନ୍ତିକ ଦର୍ଶନ, Dwaitabad and Adwaitabad, Baishnavism, Universal religion, 'Fatherhood of God and Brotherhood of Humanity', 'Worship of Spirit,' the Bible and Philosophical teachings of Jesus Christ, the cause and the real objects of Mahayajna Ceremony ଏବଂ ଅନ୍ୟାନ୍ୟ Concommitant Subjects ଅଧ୍ୟୟନ କରୁଥିଲେ । (୧୮) ଏ ସମସ୍ତ ବିଷୟରେ ଜ୍ଞାନ

Digitized by PPRACHIN, SOA

ଆହରଣ କରି, ଶିଷ୍ୟମାନେ ସେମାନଙ୍କର ଦୈନନ୍ଦିନ କାର୍ଯ୍ୟରେ ବ୍ୟବହାର କରିବା ସଙ୍ଗେ ସଙ୍ଗେ ଲୋକମାନଙ୍କୁ ସତ୍‌ଶିକ୍ଷା ଲାଭ କରିବା ନିମନ୍ତେ ପ୍ରବର୍ତ୍ତାଉଥିଲେ । ଲଣ୍ଡନ ବାପ୍‌ଟିଷ୍ଟ ମିଶନ ସମାଜର ସମ୍ପାଦକ Mr. John Brown Myers ତାଙ୍କର ଶତାବ୍ଦୀ ସ୍ମରଣିକା ପୁସ୍ତକରେ ସାଧୁଙ୍କର ମଠ ନିକଟରେ ଏକ ବୈଦାନ୍ତିକ ଶିକ୍ଷାସୂଚକ ଥିଲା ବୋଲି ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ସାଧୁଙ୍କୁ ଜୀବନ୍ତ ଭଗବାନ, ଧର୍ମପିତା ଓ ଗୁରୁ ବୋଲି ପରିଚୟ ଦେଇଅଛନ୍ତି ।

## କୁଜୀବର ପତ୍ର (ହସ୍ତଲିପି)

ସାଧୁ ସୁନ୍ଦର ଦାସ କେବଳ ବିଭିନ୍ନ ଧର୍ମର ବିଶ୍ଳେଷକ ନଥିଲେ; ସେ ମଧ୍ୟ ଥିଲେ ଜଣେ ସାମ୍ବାଦିକ । ବଙ୍ଗଳାର ରାଜା ରାମମୋହନ ରାୟଙ୍କ ଖବରକାଗଜ "ସମ୍ବାଦ କୌମୁଦୀ"ର ପ୍ରକାଶନ ପୂର୍ବରୁ ସାଧୁ ସୁନ୍ଦର ତାଙ୍କର ପତ୍ରିଶ ମଠରୁ 'କୁଜୀବର ପତ୍ର' ନାମରେ ଏକ ହସ୍ତଲିପି ଖବରକାଗଜ ପ୍ରକାଶ କରୁଥିଲେ । (୧୯) ସେଗୁଡ଼ିକ ତାଳପତ୍ର ଓ କାଗଜରେ ଲେଖା ହୋଇ କେତେକ ସମୟରେ ପାକ୍ଷିକ, କେତେକ ସମୟରେ ସାପ୍ତାହିକ ଓ ଦୈନିକ ଭାବେ ପ୍ରକାଶ ପାଉଥିଲା । (୨୦) ସାଧୁଙ୍କର ଏହି 'କୁଜୀବର' ପତ୍ରଟି ଥିଲା ଓଡ଼ିଶାର ସର୍ବାଗ୍ରବର୍ତ୍ତୀ ସ୍ୱାଧୀନ ଖବରକାଗଜ । ସାଧୁ ସୁନ୍ଦର ଦାସ ଥିଲେ ଉକ୍ତ ପତ୍ରିକାର ସମ୍ପାଦକ । ଗଙ୍ଗାଧର ଷଡ଼ଙ୍ଗୀ ଓ ରାମଚନ୍ଦ୍ର ଯାଚକ ସହକାରୀ ସମ୍ପାଦକ ରୂପେ ପତ୍ରିକା ପ୍ରକାଶନ କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରୁଥିଲେ । (୨୧) ଉକ୍ତ ଖବରକାଗଜରେ ରାଜନୀତି, ଧର୍ମନୀତି, ସମାଜ ସଂସ୍କାର ଓ ଖ୍ରୀଷ୍ଟ ସମ୍ବନ୍ଧୀୟ ଦାର୍ଶନିକ ପ୍ରଶ୍ନ ସମୂହ ଆଲୋଚିତ ହେଉଥିଲା । ବିଶେଷକରି ଦେଶର ସ୍ୱାସ୍ଥ୍ୟ, ଶିକ୍ଷା ପ୍ରଣାଳୀ, ଶିଳ୍ପ, ଗୋ, କୃଷି, ବାଣିଜ୍ୟ, ବ୍ରହ୍ମବିଦ୍ୟା, ସଙ୍ଗୀତ ଓ ନାନା ଶାସ୍ତ୍ରର ତତ୍ତ୍ୱ ସାଙ୍ଗକୁ ଦେଶ-ଜାତିର ଅଧଃପତନର କାରଣମାନ ବିଶଦ ଭାବରେ ସଠିକ ଦୃଷ୍ଟାନ୍ତ ସହ ପ୍ରକାଶ ପାଉଥିଲା ।

Digitized by PPRACHIN, SOA

ସାଧୁ ତତ୍‌କାଳୀନ ଶାସକଗଣଙ୍କୁ ବ୍ରାହ୍ମଣମାନଙ୍କ ନିମିତ୍ତ ବୈଦାନ୍ତିକ ସ୍କୁଲ ଖୋଲିବା ପାଇଁ ଅନୁରୋଧ କରିବା ସଙ୍ଗେ ସଙ୍ଗେ ସରକାରଙ୍କ ସାମରିକ ବ୍ୟୟ ଉପରେ ସମାଲୋଚନା କରୁଥିଲେ । ଏଠାରେ ଉଲ୍ଲେଖ କରାଯାଇପାରେ କି, ଓଡ଼ିଶାର କେତେକ ଗୁରୁତ୍ୱପୂର୍ଣ୍ଣ ଧର୍ମ ସମ୍ବନ୍ଧୀୟ ଓ ବିଧିମୂଳକ ପ୍ରଶ୍ନ ଉପରେ ପ୍ରକାଶିତ ହୋଇଥିବା ସାଧୁଙ୍କର ମତାମତଗୁଡ଼ିକ ଲଣ୍ଡନର ବାପ୍‌ଟିଷ୍ଟ ମିଶନାରୀ ରିପୋର୍ଟ ଏବଂ ଜର୍ଣ୍ଣାଲରେ ମନ୍ତବ୍ୟ ସହ ପ୍ରକାଶିତ ହୋଇଅଛି । ୧୮୨୬ ମସିହା ନଭେମ୍ବର ମାସରେ ସଟନଙ୍କ ଦ୍ୱାରା ଇଂରାଜୀରେ ଅନୁବାଦ ହୋଇଥିବା ଏକ କୁଞ୍ଜବର ପଦରେ ସାଧୁ ସୁନ୍ଦର ଦାସ ପୁରୀରେ ଥିବା ତତ୍‌କାଳୀନ ସାଧୁ ଓ ମହନ୍ତମାନଙ୍କ ଉପରେ କଟାକ୍ଷପାତ କରିବା ସଙ୍ଗେ ସଙ୍ଗେ ଉତ୍କଳୀୟ ପ୍ରଜାମାନଙ୍କୁ ଈଶ୍ୱରଙ୍କ ନିୟମ ମାନି ଚଳିବାକୁ ହେଲେ କି ପ୍ରକାର ଶିକ୍ଷା ଦରକାର, ତାହା ସେ ଶାସକମାନଙ୍କୁ ପଚାରିଥିଲେ । ଉଲ୍ଲେଖନୀୟ ବିଷୟ ଏହିକି ଯେ ଏ ସମସ୍ତ ବିଷୟ ପ୍ରକାଶିତ ହେବା ପୂର୍ବରୁ, ବୈଦାନ୍ତିକ ସ୍କୁଲର ଛାତ୍ର ଓ ଶିକ୍ଷକମାନଙ୍କ ଦ୍ୱାରା ତାହା ସମାଲୋଚିତ ହେଉଥିଲା । କୁଞ୍ଜବର ପଦଗୁଡ଼ିକ କଟକର ଜନସାଧାରଣ, ବିଭିନ୍ନ ମିଶିନେରୀ କେନ୍ଦ୍ର ଏବଂ ରାଜା ଓ ମହାରାଜାଙ୍କ ମଧ୍ୟରେ ପ୍ରଚୁର କରାଯାଉଥିଲା ।

## ଖ୍ରୀଷ୍ଟିଆନ ମିଶନେରୀ ଓ ସାଧୁ

ସାଧୁ ସୁନ୍ଦର ଦାସ ଓ ଖ୍ରୀଷ୍ଟିୟାନ ମିଶନେରୀଙ୍କ ମଧ୍ୟରେ ସାକ୍ଷାତ ଆଲୋଚନା ସ୍ମରଣୀୟ ଅଟେ । ସଟନଙ୍କର ତାଙ୍କ ସହ ପ୍ରଥମ ସାକ୍ଷାତ୍ ହୋଇଥିଲା ଅକ୍ଟୋବର ୧୦, ୧୮୨୬ ମସିହାରେ । ଓଡ଼ିଶା ଇତିହାସର ଏହି ଦିନଟିକୁ ଏକ ଐତିହାସିକ ଦିନ ବୋଲି ଗଣନା କରାଯାଇପାରେ । (୨୨) ଉକ୍ତ ଦିନ ବିଭିନ୍ନ ଅଞ୍ଚଳରୁ ଆସିଥିବା ପ୍ରାୟ ୫୦୦୦ ଲୋକଙ୍କ ସମାବେଶରେ କୁଞ୍ଜବର ମଠଠାରେ ଅନୁଷ୍ଠିତ ହେଉଥିଲା ଏକ ସର୍ବଧର୍ମ ସମନ୍ୱୟର ଆଲୋଚନା ଚକ୍ର । (୨୩) ସାଧୁ ଗୀତା, ରାମାୟଣ, ମହାଭାରତ ଓ ନୂତନ ନିୟମ ସଂଯୁକ୍ତ ବାଇବେଲ ମଧ୍ୟରୁ ଅନେକ ସୁନ୍ଦର ଉଦାହରଣ ଦେଇ ଉପସ୍ଥିତ ଜନତାଙ୍କୁ

Digitized by PPRACHIN, SOA

ସମାଜନୀତି, ରାଜନୀତି ଓ ଧର୍ମନୀତି ସମ୍ବନ୍ଧରେ ବୁଝାଉଥିଲେ । ବୁଝାଇଲାବେଳେ ସାଧୁ ଏମିତି ଭାବପ୍ରବଣ ହୋଇ ଉଠୁଥିଲେ ଯେ ବେଳେବେଳେ ତାହବା ସଙ୍ଗେ ସଙ୍ଗେ ଠୋ ଠୋ କରି ମଧ୍ୟ ହସି ଉଠୁଥିଲେ । ଏହି ଆଲୋଚନା ତହରେ ସାଧୁଙ୍କର ମୁଖ୍ୟ ଉପଦେଶ ହେଉଛି, "ସବୁ ଧର୍ମ ସମାନ । ଈଶ୍ବର ହିଁ ଏକମାତ୍ର ଜଗତର ପିତା ଓ ଆମ୍ଭେମାନେ ତାହାଙ୍କର ପୁତ୍ର ।" ଉକ୍ତ ଉପଦେଶଟିକୁ ମିଶନେରୀମାନେ ଅତି ଆନନ୍ଦରେ ତାଙ୍କ ଲଣ୍ଡନ ରିପୋର୍ଟରେ ଲିପିବଦ୍ଧ କରିଅଛନ୍ତି ।

ଏଠାରେ ସ୍ମରଣ କରାଯାଇପାରେ କି, ଉଭୟଙ୍କ (ସାଧୁ ଓ ମିଶନେରୀମାନେ)ର ସାକ୍ଷାତ୍ ପୂର୍ବରୁ, ଶିଷ୍ୟମାନଙ୍କ ଦ୍ୱାରା ଅଣା-ଯାଇଥିବା Oriya Catechism A Tract on the Ten Commandments ଏବଂ New Testamentର ଏକ ନକଲ ଉପରେ ସାଧୁ ନିଜର କୁଳାବର ମଠଠାରେ ଆଲୋଚନା କରି ଯୀଶୁଙ୍କର ଉପଦେଶାବଳୀ ଉପରେ ସନ୍ତୁଷ୍ଟ ହେବା ସଙ୍ଗେ ସଙ୍ଗେ ଆଗ୍ରହ ପ୍ରକାଶ କରିଥିଲେ । ଏହାଦ୍ୱାରା ମିଶନେରୀମାନେ ସେମାନଙ୍କର ମନୋବଳକୁ ଦୃଢ଼କରି କୁଳାବର ମଠରେ ଉପସ୍ଥିତ ହୁଅନ୍ତେ, ଆରମ୍ଭ ହେଲା ଉଭୟଙ୍କ ମଧ୍ୟରେ ଧର୍ମ ବିଷୟରେ ତାତ୍ତ୍ୱିକ ଆଲୋଚନା । ପୁଣି ଲେସି ସାହେବଙ୍କର ଟିପ୍ପଣୀରୁ ଜଣାପଡ଼େ ଯେ "ଯୀଶୁଖ୍ରୀଷ୍ଟଙ୍କ ଭଳି ସାଧୁ ସୁନ୍ଦର ଦାସଙ୍କର ମଧ୍ୟ ୧୨ ଜଣ ଅନ୍ତରଙ୍ଗ ଶିଷ୍ୟ ଥିଲେ ।" ଆଲୋଚନା ମାଧ୍ୟମରେ ମିଶନେରୀମାନେ ଅନୁଭବ କଲେ ଯେ, 'ସାଧୁ ଜଣେ ଅସାଧାରଣ ବିଜ୍ଞ ପଣ୍ଡିତ' । ନାନା ଶାସ୍ତ୍ରରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ତାଙ୍କର ବିଚକ୍ଷଣ ବୁଦ୍ଧି ଏବଂ ଯୀଶୁଙ୍କ ଉପଦେଶାବଳୀକୁ ତନ୍ନ ତନ୍ନ କରି ଆଲୋଚନା କରିବା ପାଇଁ ଥିଲା ପ୍ରବଳ ଆଗ୍ରହ । ତେଣୁ ଯଦିଓ ଏସବୁ ଥିଲା ମିଶନେରୀଙ୍କ ପାଇଁ ଏକ ଅପୂର୍ବ ସୁଯୋଗ, କିନ୍ତୁ ସାଧୁ ନିଜର ଧର୍ମ ପଥରେ ଥିଲେ ଅଟଳ, ଯଦ୍ଦ୍ୱାରା ମିଶନେରୀମାନେ ନିରାଶ ମନରେ ପ୍ରତ୍ୟାବର୍ତ୍ତନ ପୂର୍ବକ ସାଧୁଙ୍କ ଶିଷ୍ୟଗଣଙ୍କ ସହିତ ଆରମ୍ଭ କଲେ ଯୋଗାଯୋଗ, ଯାହାଦ୍ୱାରା କି ଗଙ୍ଗାଧର ଷଡ଼ଙ୍ଗୀ (ସାଧୁଙ୍କର ମୁଖ୍ୟ ଶିଷ୍ୟ), ରାମଚନ୍ଦ୍ର ଯାଚକ ଓ

*

Digitized by PPRACHIN, SOA

ଆତୁର ଅନେକେ ଖ୍ରୀଷ୍ଟଧର୍ମ ଗ୍ରହଣ କଲେ । ଏହାଦ୍ୱାରା ସାଧୁ ଓ ମିଶନେରୀମାନଙ୍କ ମଧ୍ୟରେ ଆରମ୍ଭ ହେଲା ଦ୍ୱନ୍ଦ୍ୱମୂଳକ ଘଟଣା । ଉଭୟ ଧର୍ମର ଦାର୍ଶନିକ ତତ୍ତ୍ୱ ନେଇ ପରସ୍ପର ପରସ୍ପରକୁ ନାନା ପ୍ରକାର ଛନ୍ଦରେ ଛନ୍ଦିତ କରି ସ୍ୱ ସ୍ୱ ଧର୍ମର ପ୍ରଭାବ ସଙ୍ଗେ ଗୌରବ ବର୍ଣ୍ଣନରେ ଆଶାପ୍ରୀ ହେଲେ । ଉଭୟଙ୍କ ମଧ୍ୟରେ ଚ୍ଲାଲା ବଭିନ୍ନ ପ୍ରକାରର ବାଦାନୁବାଦ । ପରିଶେଷରେ ଜଣେ ସ୍ତ୍ରୀଲୋକର ମନ୍ଦ କାର୍ଯ୍ୟ ଉପରେ ସାଧୁ ଭର୍ତ୍ସନା କରିବାରୁ ୧୮୩୦ ମସିହା ଅଗଷ୍ଟ ୯ ତାରିଖ ଦିନ କଟକ ସହରଠାରେ ଏକ ବିରାଟ ଜନଗହଳି ମଧ୍ୟରେ ତାଙ୍କୁ କାରାବରଣ କରିବାକୁ ପଡ଼ିଥିଲା । (୨୪) ତଥାପି ଜେଲରୁ ଖଲାସ ହେବାମାତ୍ରେ ସାଧୁଙ୍କର ସମ୍ମାନାର୍ଥେ କଟକରେ ଆୟୋଜନ ହୋଇଥିଲା ସତ୍ୟଧର୍ମାବଲମ୍ବୀମାନଙ୍କର ଏକ ବିରାଟ ସଭା । ସାଧୁଙ୍କ ଉପରେ ମଧ୍ୟ ଏକଦା ପୋଲିସ ୧୪୪ ଧାରା ଜାରି କରି କୁଜାଙ୍ଗର ଗ୍ରାମରୁ ବାହାରି ଯିବା ନିମନ୍ତେ ଆଦେଶ କରିଥିଲେ । ଠିକ୍ ସେହିପରି ସାଧୁ ମଧ୍ୟ ଖ୍ରୀଷ୍ଟିୟାନ ମିଶନେରୀମାନଙ୍କର ହିନ୍ଦୁ ଲୋକମାନଙ୍କୁ ଧର୍ମାନ୍ତରିତ କରିବା ଉପରେ ୧୮୫୦ ମସିହାରେ ମିଶନେରୀମାନଙ୍କ ଉପରେ କରିଥିଲେ ଏକ ମକଦ୍ଦମା ।

ଏସବୁ ବାଦାନୁବାଦ ସତ୍ତ୍ୱେ ମିଶନାରୀମାନଙ୍କ ଦୃଷ୍ଟିରେ ସାଧୁ ସୁନ୍ଦର ଦାସ ଥିଲେ ଜଣେ ଉଚ୍ଚକୋଟୀର ମହାପୁରୁଷ । Mr. John Brown Myers, Editor of the Centenary Volume of the Baptist Missionary Society, London (1792-1892) page No. 237 to 252 ଲେଖିଛନ୍ତି—

"The Orissa Mission is the creation of the spirit of God. Its story is a brief fragment of the literature of the spirit. The bush of Orissa Mission-history is aflame with the Living God, and the same God was training through a Guru or Spiritual Guide named Sundar Das (Sundara Babaji or Dharma Pita) to a number of young men for the

Digitized by PPRACHIN, SOA

acceptance of yoke of Christ. That Guru dwelt a few miles north of Cuttack named Kujibar. Martial in temper, he had started life as a soldier (militia) and battled for the chiefs of hills (Rulers) as a Commander, but he was meditative in mood. He became a Hindu Reformer and by his strong personal force and spiritual magnetism attracted as many as five hundred disciples".

ସାଧୁ ସୁନ୍ଦର ଦାସଙ୍କ ମହାପ୍ରୟାଣ ବିଷୟରେ ଅନେକ ପ୍ରବାଦ ଦେଖା ଦେଇଥିଲେ ସୁଦ୍ଧା ଦୀର୍ଘ ୧୧୮ ବର୍ଷର ଘଟଣାବହୁଳ ଜୀବନ ଅତିକ୍ରମ କରି ସର୍ବଶେଷରେ ଲେସି ସାହେବଙ୍କ ମତରେ, ୧୮୩୮ ମସିହା ଏପ୍ରିଲ ୧୭ ତାରିଖରେ ଏହି ମହାତ୍ମାଙ୍କର ହୋଇଥିଲା ତିରୋଭାବ । (୨୫) ବର୍ତ୍ତମାନ ସାଧୁଙ୍କର "କୁଜିବର ମଠ"ଟି ରାଜା ଜନ୍ମେଜୟ ଦେବଙ୍କ ଦ୍ୱାରା ଖନନ ହୋଇଥିବା ଚନ୍ଦନ ପୋଖରୀର ଉତ୍ତର-ପୂର୍ବ କୋଣରେ ଅବସ୍ଥିତ । ଏହି ଚନ୍ଦନ ପୋଖରୀଟିର ଖନନ କାର୍ଯ୍ୟ ପରେ ଉଗଣ୍ଡି ନାମରେ ପରିଚିତ । ସେଠାରେ ସାଧୁ ସୁନ୍ଦର ଦାସଙ୍କର ପଞ୍ଚମୁଖୀ ସମାଧି ମନ୍ଦିର, ବାଇଶି ପାହାଚ, ଜଳଚା କୁଣ୍ଡ, ଯଜ୍ଞ ବେଦୀ, ଦୋଳ ମଣ୍ଡପ, ସଭା-ମଣ୍ଡପ, ରୋଷେଇ ଘର ସାଙ୍ଗକୁ କୂପ ଏବଂ ଧର୍ମଯାତ୍ରୀଙ୍କ ପାଇଁ ଧର୍ମଶାଳା ପ୍ରଭୃତି ଭଗ୍ନାବସ୍ଥାରେ ଅଦ୍ୟାବଧି ବିଦ୍ୟମାନ ।

ପରିଶେଷରେ ସାଧୁ ସୁନ୍ଦର ଦାସ ଦୀର୍ଘ ୧୧୮ ବର୍ଷ (୧୭୨୦-୧୮୩୮) କାଳ ଦେଶ, ଜାତି ଓ ଧର୍ମ ପାଇଁ ସଂଘର୍ଷ କରି ଆସିଥିଲେ ହେଁ, ସେ ଆଜି ଅତଳ ଗର୍ଭରେ ବିସ୍ମୃତ; ମାତ୍ର ତାଙ୍କ (ସାଧୁଙ୍କ) ସମସାମୟିକ ରାଜା ରାମମୋହନ ରାୟ (୧୭୭୪-୧୮୩୩) ଜନ-ସମାଜରେ ଯଥେଷ୍ଟ ଭାବରେ ଆଦୃତ ହୋଇ ପାରିଛନ୍ତି । ନିଃସନ୍ଦେହରେ ସାଧୁଙ୍କ କାର୍ଯ୍ୟକଳାପ ରାଜା ରାମମୋହନ ରାୟ, ସାଧୁ ସେଣ୍ଟ ପଲ୍, ଡାକ୍ତର ଆନି ବେଶାନ୍ତ ଓ କେଶବ ଚନ୍ଦ୍ର ସେନଙ୍କ ସଙ୍ଗେ

Digitized by PPRACHIN, SOA

ତୁଳନୀୟ ଏବଂ ଯଦ୍ୟପି ଏହି ମହାପୁରୁଷଙ୍କର କର୍ମକ୍ଷେତ୍ର ଏକ ଦୃଷ୍ଟି-ବହିର୍ଭୂତ ସ୍ଥାନରେ ଅବସ୍ଥିତ; ତଥାପି ଏହି ମହାନୁଭବଙ୍କର ସ୍ୱଦେଶ-ପ୍ରେମ ବହୁଳ ଭାବରେ ପ୍ରଶଂସନୀୟ ।

(ସୌଜନ୍ୟ : କୋଣାର୍କ, ୫୭/୧୯୮୫)

## References


୧ । O.H.R.J. Vol. XXIV, XXV and XXVI. ଭୁବନେଶ୍ୱର, ୧୯୮୦, ପୃ-୧୨୭ ।

୨ । କୁଜାବର ପବ୍ଲିକେସନ, ପାମ୍ପଲେଟ ନମ୍ବର-୭, ୧୯୪୮, ପୃ-୨

୩ । ତତ୍ରୈବ, ପୃ-୨-୩, ୪ । ତତ୍ରୈବ, ପୃ-୪, ୫ । ତତ୍ରୈବ, ପୃ-୪,

୬ । ତତ୍ରୈବ, ୭ । ତତ୍ରୈବ ପୃ-୫ ।

୮ । O. H R. J. Vol. XXIV, XXV and XXVI, ଭୁବନେଶ୍ୱର, ୧୯୮୦, ପୃ-୧୨୪ ।

୯ । Presidential address of Dr. H. K Mahtab during the 112th death anniversary held at Kujibar in 1950, Quoted by P. Mukherjee in O.H.R.J., Vol. XXIV, XXV, and XXVI, ଭୁବନେଶ୍ୱର, ୧୮୮୦, ପୃ-୧୨୩ ।

୧୦ । ତତ୍ରୈବ ।

୧୧ । କୁଜାବର ପବ୍ଲିକେସନ, ପାମ୍ପଲେଟ ନମ୍ବର—୭, ପୃ-୫-୬ ।

୧୨ । ତତ୍ରୈବ, ପାମ୍ପଲେଟ ନମ୍ବର—୮, 1950, କଟକ, ପୃ-୨୭ ।

୧୩ । ପାମ୍ପଲେଟ ନମ୍ବର-୭, ୧୯୪୮, କଟକ, ପୃ-୯

୧୪ । ତତ୍ରୈବ, ୧୫ । ତତ୍ରୈବ, ପୃ-୧୦, ୧୬ । ତତ୍ରୈବ,

୧୭ । ତତ୍ରୈବ, ପୃ-୨ (ମୁଖବନ୍ଧ), ୧୮ । ତତ୍ରୈବ, ୧୯ । ତତ୍ରୈବ, ପୃ-୨୪, ୨୦ । ତତ୍ରୈବ ପୃ-୨୭, ୨୧ । ତତ୍ରୈବ, ପୃ-୨୪,

୨୨ । ତତ୍ରୈବ, ପୃ-୧୮, ୨୩ । ତତ୍ରୈବ, ପୃ-୧୮-୧୯ । ୨୪ । ତତ୍ରୈବ, ପୃ-୨୮, ୨୫ । ତତ୍ରୈବ, ପୃ-୩୨-୩୩ ।


ଶସର୍ଚ୍ଚ ସ୍କଲର,
ଭୁବନେଶ୍ୱର



Digitized by PPRACHIN, SOA

# ସାଧୁ ସୁନ୍ଦରଙ୍କ ଦ୍ୱାଦଶ ଶିଷ୍ୟ ଓ ଚଉପଦୀ ଛାନ୍ଦ

ଶ୍ରୀ ବଟକୃଷ୍ଣ ସାମଲ, ଏମ୍. ଏ., ବି. ଇଡ଼.

"He (Sundar Das) in accordance with this character (the character of Jesus Christ) chose twelve of his principal disciples to represent the twelve apostles." (ମିଶନାରୀ ରିପୋର୍ଟ)

ଯୀଶୁଖ୍ରୀଷ୍ଟଙ୍କ ଅନୁରୂପ ସୁନ୍ଦର ଦାସ ଦ୍ୱାଦଶ ଅନ୍ତରଙ୍ଗ ଶିଷ୍ୟ ପରିବେଷ୍ଟିତ ଥିଲେ । ଜ୍ଞାନଚର୍ଚ୍ଚା, ଧର୍ମପ୍ରଚାର, କୁଞ୍ଜାବର ପତ୍ର ସମ୍ପାଦନା ଓ ଯଜ୍ଞ ପରିଚାଳନା ପ୍ରଭୃତି କାର୍ଯ୍ୟରେ ସେମାନେ ଗୁରୁଦେବଙ୍କୁ ସାହାଯ୍ୟ କରୁଥିଲେ । ତାଙ୍କଠାରୁ ପୁରାଣ, ଶାସ୍ତ୍ର, ବେଦ ବେଦାନ୍ତ ଓ ବ୍ରହ୍ମଜ୍ଞାନ ଇତ୍ୟାଦି ଶିକ୍ଷା ଲାଭ କରି ବିଭିନ୍ନ ସ୍ଥାନରେ ତାହାର ପ୍ରଚାର ଉଦ୍ଦେଶ୍ୟରେ ବହିର୍ଗତ ହେଉଥିଲେ ।

ଯୁଗେ ଯୁଗେ ଏହି ଶିଷ୍ୟ ପରମ୍ପରା ଗୁରୁମାନଙ୍କର ପ୍ରତିଷ୍ଠା ପଥରେ ପୁଷ୍ପବୃଷ୍ଟି କରି ଆସିଛି । ସାଧୁ ସୁନ୍ଦରଙ୍କର ଦ୍ୱାଦଶ ଶିଷ୍ୟ ବ୍ୟତୀତ ପ୍ରାୟ ପାଞ୍ଚଶହ ବ୍ୟକ୍ତି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଏ ପ୍ରସଙ୍ଗରେ ଲଣ୍ଡନର ବାପ୍‌ଟିଷ୍ଟ ମିଶନାରୀ ସୋସାଇଟିର ଶତବାର୍ଷିକୀ ଗ୍ରନ୍ଥରେ କୁହାଯାଇଛି—

"He (Sundar Das) became Hindu reformer and by his strong personal force and spiritual magnetism attracted as many as five hundred disciples."

Digitized by PPRACHIN, SOA

ସାଧୁଙ୍କର ଦ୍ୱାଦଶ ଶିଷ୍ୟ ମଧ୍ୟରେ ପାଞ୍ଚଜଣ ପଞ୍ଚମହାଶିଷ୍ୟ ରୂପେ ପ୍ରସିଦ୍ଧ ଥିଲେ । ସେମାନେ ହେଲେ, ୧ । ରାମଚନ୍ଦ୍ର ଝା ଯାଚକ ୨ । ମାଧବ ବଣ୍ଟାଳ, ୩ । ଗଙ୍ଗାଧର ଷଡ଼ଙ୍ଗୀ, ୪ । ରାମଚନ୍ଦ୍ର ପଣ୍ଡା, ✳ ୫ । ମଦନମୋହନ ସାହୁ ।

ରାମଚନ୍ଦ୍ର ଝା ଯାଚକ ଓ ମାଧବ ବଣ୍ଟାଳ ଯଥାକ୍ରମେ ଶାଳଗାଁ ଓ କୁଜାବର ନିବାସୀ । ଏ ଦୁହେଁ ଗୁରୁଙ୍କର ପ୍ରଥମ ଶିଷ୍ୟ । ସାଧୁଙ୍କ ସିଦ୍ଧିଲାଭ ପରେ ପାରଣା ଯୋଗାଇଥିବା ଏ ଦୁଇଜଣ ବ୍ୟକ୍ତିଙ୍କୁ ସେ ଶିଷ୍ୟ ରୂପେ ଗ୍ରହଣ କରିଥିଲେ । ସେ ଦୁହେଁ 'କୁଜାବର ପତ୍ର' ନାମରେ ପ୍ରକାଶିତ ଏକ ସମ୍ବାଦପତ୍ରର ସମ୍ପାଦନାରେ ସାହାଯ୍ୟ କରୁଥିଲେ । ସେ ପରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ସେହିପରି ସାଧୁଙ୍କର ପ୍ରଥମ ସାକ୍ଷାତରେ ଶିଷ୍ୟତ୍ୱ ଗ୍ରହଣ କରିଥିଲେ ମାଧବ ବଣ୍ଟାଳ । ମାଧବ ବଣ୍ଟାଳଙ୍କ ପୁତ୍ର ବନ ବଣ୍ଟାଳ ଓରଫ୍ ଭଗବାନ ଦାସ ସାଧୁଙ୍କର ଥିଲେ ପ୍ରିୟ ଭକ୍ତ । ଅଦ୍ୟାପି ତାଙ୍କର ବଂଶଧରମାନେ କୁଜାବର ଗ୍ରାମରେ ସୁପ୍ରତିଷ୍ଠିତ ଏବଂ ସୁନ୍ଦର ଦାସଙ୍କର ଭକ୍ତ । କୁଜାବର ଯଜ୍ଞକୁ ଚିରଜୀବିତ ରଖିବା ପାଇଁ ସେ ଏକ ସ୍ଥାୟୀ ବ୍ୟବସ୍ଥା ଗ୍ରହଣ କରିଥିଲେ । ଯଜ୍ଞର ବହିର୍ଭୂତ ଆନୁଷ୍ଠାନିକ କାର୍ଯ୍ୟ ଏହି ପଞ୍ଚ ମହା-ଶିଷ୍ୟଙ୍କ ଦାୟିତ୍ୱରେ ରଖାଯାଇଥିଲା । ତେଣୁ ଅଦ୍ୟାବଧି ଉକ୍ତ

---

✳ ପଞ୍ଚ ମହାଶିଷ୍ୟଙ୍କ ମଧ୍ୟରେ କଟକ ବକ୍ସିବଜାରର ରାମଚନ୍ଦ୍ର ସାହୁଙ୍କ ନାମ କେତେକ ସ୍ଥାନରେ ଉଲ୍ଲେଖ ଅଛି । ବାବାଜୀ ବନ ବଣ୍ଟାଳଙ୍କ ନାତି କୁଜାବର ଗ୍ରାମର କ୍ଷୀରୋଦ ଚନ୍ଦ୍ର ବଣ୍ଟାଳ କହନ୍ତି ଯେ ମଦନ ମୋହନ ଓ ରାମଚନ୍ଦ୍ର ଦୁଇଭାଇ । ସେମାନଙ୍କ ମଧ୍ୟରୁ ରାମଚନ୍ଦ୍ର ଥିଲେ ଜ୍ୟେଷ୍ଠ ଏବଂ ସେଇ ହିଁ ପଞ୍ଚ ମହାଶିଷ୍ୟଙ୍କ ଅନ୍ତର୍ଗତ; ମାତ୍ର ବକ୍ସିବଜାରର ସାହୁ ପରିବାରରୁ ଏବେ ଯେଉଁ ଖବର ମିଳେ, ସେଥିରେ ସେମାନେ ଅଗଣି ସାହୁଙ୍କର ନାମ ଉଲ୍ଲେଖ କରନ୍ତି । ନିଃସନ୍ତାନ ଅଗଣି ସାହୁ ସାଧୁଙ୍କ ଦୟାରୁ ୪ ପୁତ୍ର ୩ କନ୍ୟା ଲାଭ କରିଥିଲେ । ଏ ବିଷୟରେ ଅଧିକ ଗବେଷଣା ଆବଶ୍ୟକ । ଏହି ସଂଖ୍ୟାରେ ସନ୍ନିବେଶିତ ବ୍ରଜସୁନ୍ଦର ସାହୁଙ୍କ ପ୍ରବନ୍ଧଟି ଦ୍ରଷ୍ଟବ୍ୟ । — ସମ୍ପାଦକ

Digitized by PPRACHIN, SOA

ଶିଷ୍ୟବର୍ଗଙ୍କର ବଂଶଧରମାନେ ପ୍ରତିବର୍ଷ ଯଜ୍ଞରେ ଯଥାବିଧି ସହଯୋଗ କରି ଯଜ୍ଞକୁ ସାଫଲ୍ୟମଣ୍ଡିତ କରି ଆସୁଛନ୍ତି ।

ପ୍ରଥମ ଓଡ଼ିଆ ଖ୍ରୀଷ୍ଟଧର୍ମ ପ୍ରଚାରକ ଭାବରେ ଶିଷ୍ୟ ଗଙ୍ଗାଧର ଷଡ଼ଙ୍ଗୀଙ୍କ ବିଷୟ ବିଭିନ୍ନ ସ୍ଥାନରେ ଆଲୋଚିତ ହୋଇଅଛି ।

ଶିଷ୍ୟ ମଦନ ମୋହନ ସାହୁ କଟକ ବକ୍ସିବଜାରସ୍ଥ ଜଣେ ଖ୍ୟାତନାମା ବ୍ୟକ୍ତି । ସାଧୁଙ୍କ ଅଲୌକିକତାର ପରିଚୟ ପାଇ ଏକଦା ସେ ତାଙ୍କୁ ଗୃହକୁ ନିମନ୍ତ୍ରଣ କରିଥିଲେ । ସନ୍ତାନହୀନ ମଦନ ମୋହନ ପୁତ୍ରକାମନା କରି ଜଣାଇଥିଲେ ଆକୁଳ ମିନତି । 'ତଥାସ୍ତୁ' ବୋଲି କହିଥିଲେ ବାକ୍‌ସିଦ୍ଧ ସୁନ୍ଦର ଦାସ । ବାତ୍ସଲ୍ୟଭରା ହୃଦୟରେ ସ୍ନେହ ଗଦ୍ ଗଦ୍ କଣ୍ଠରେ ମଦନମୋହନଙ୍କ ସନ୍ତାନ କାଙ୍ଗାଳୁଣୀ ପତ୍ନୀ ତାଙ୍କୁ ହିଁ ନିଜର ପୁତ୍ର ବୋଲି ସମ୍ବୋଧନ କରି କହିଥିଲେ—"ସୁନ୍ଦର ! ତୁ ହିଁ ମୋର ପୁତ୍ର । ତୋର ସୁନ୍ଦର ମୁଖ ଦର୍ଶନରେ ସନ୍ତାନହୀନା ମାତା ଆଜଠାରୁ ଲଭିବ ସାନ୍ତ୍ୱନା ।"

ସଫଳ ହୋଇଥିଲା ସାଧୁଙ୍କର ଆଶୀର୍ବାଦ । ମାତାର କୋଳ ପୂର୍ଣ୍ଣକରି, ସାରା ପରିବାରରେ ଆନନ୍ଦର ସ୍ରୋତ ଛୁଟାଇ ଜନ୍ମ ଲଭିଲା ସନ୍ତାନଟିଏ । ଆତ୍ମବିଭୋର ହୋଇଉଠିଛନ୍ତି ପତିପତ୍ନୀ । ହେଲେ ପୁତ୍ରଲାଭ କରି ଭୁଲିଯାଇ ନାହାନ୍ତି ସେମାନେ ସୁନ୍ଦରଙ୍କୁ । ମଦନ ମୋହନଙ୍କ ପ୍ରଥମ ପୁତ୍ରର ଆସନ ଗ୍ରହଣ କରିଛନ୍ତି ସୁନ୍ଦର ଦାସ । ଜ୍ୟେଷ୍ଠ ପୁତ୍ର ବୋଲି ତାଙ୍କ ସମ୍ପତ୍ତିର ଏକ ଅଂଶ ସୁନ୍ଦରଙ୍କ ନାମରେ କରାଯାଇଛି । ସମସ୍ତ ବିତିଯାଇଛି । ମଦନ ମୋହନଙ୍କ ବଂଶଧରମାନେ ସୁଖ୍ୟାତି ଅର୍ଜନ କରିଛନ୍ତି ଏବଂ ଆଜିସୁଦ୍ଧା ସାଧୁଙ୍କ ସମାଧି ମନ୍ଦିରରେ ଯଥାଶକ୍ତି ରକ୍ଷଣାବେକ୍ଷଣ ତଥା ଯଜ୍ଞ ପରିଚାଳନାର ସମସ୍ତ ଦାୟିତ୍ୱ ଗ୍ରହଣ କରି ଆସୁଛନ୍ତି ।

ସାଧୁଙ୍କର ପଞ୍ଚମ ମହାଶିଷ୍ୟ ରାମଚନ୍ଦ୍ର ପଣ୍ଡା, ଚୌଦ୍ୱାର ନିକଟବର୍ତ୍ତୀ ଯାଜଭୈରବ ନୂଆଗାଁ ନିବାସୀ । ପାରିବାରିକ ଜୀବନର

Digitized by PPRACHIN, SOA

ମାୟା ଭୁଟାଇ ସେ ମଧ୍ୟ ଅମୃତର ସନ୍ଧାନ କରି ଗୁରୁଙ୍କ ପଦାରବିନ୍ଦରେ ନିଜକୁ ଅର୍ପଣ କରିଦେଇ ଅମୃତଲୋକରେ ପାଦ ଦେଇଛନ୍ତି ।

ଏହି ପଞ୍ଚ ମହାଶିଷ୍ୟଙ୍କ ବ୍ୟତୀତ ଦୈତ୍ୟାରି ସାହୁ, ଜଗନ୍ନାଥ ପଟ୍ଟନାୟକ, କୃପାସିନ୍ଧୁ ସାହୁ, ରାଧାକୃଷ୍ଣ ଦାସ, ସୁଦର୍ଶନ ରାଉତ, ରାମକୃଷ୍ଣ ଦାସ ଓ ପରମେଶ୍ୱର ମଲ୍ଲ ଥିଲେ ସାଧୁଙ୍କର ଅନ୍ୟ ସାତଜଣ ବିଶିଷ୍ଟ ଶିଷ୍ୟ । କଟକବାସୀ ଦୈତ୍ୟାରି ସାହୁ ଥିଲେ ଜଣେ "ଖାଉଁବଲ" ✳ ବ୍ୟବସାୟୀ । ପ୍ରଭାତର ବ୍ୟବସାୟକୁ ଯିବାପଥରେ ସାଧୁଙ୍କ ଆଶ୍ରମରେ ସେ ବିଶ୍ରାମ ନେଉଥିଲେ । କ୍ରମେ ତାଙ୍କର ମହ-ମାୟତାରେ ପ୍ରଭାବିତ ହୋଇ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଏହିପରି ସାଧୁଙ୍କର ଦ୍ୱାଦଶ ଶିଷ୍ୟଗଣ ଆଶ୍ରମର ସୁପରିଚାଳନା, ଯଜ୍ଞାନୁଷ୍ଠାନ, ସାହିତ୍ୟକ କାର୍ଯ୍ୟ ଓ ଧର୍ମପ୍ରଚାର ପ୍ରଭୃତି ମୁଖ୍ୟ ଦାୟିତ୍ୱମାନ ଗ୍ରହଣ କରି ସାଧୁଙ୍କର ଅନ୍ତରଙ୍ଗ ଓ ପ୍ରିୟଭାଜନ ହେବା ସଙ୍ଗେ ସଙ୍ଗେ ଆଶ୍ରମକୁ ଋଦ୍ଧିମନ୍ତ କରିଥିଲେ ।

## ଶିଷ୍ୟ ରାମକୃଷ୍ଣ ଦାସ : ନାଟ୍ୟକାର

ସାଧୁ ସୁନ୍ଦର ଦାସଙ୍କ ଦ୍ୱାଦଶ ଶିଷ୍ୟଗୋଷ୍ଠୀ ମଧ୍ୟରେ ନାଟ୍ୟକାର ରାଧାକୃଷ୍ଣ ଦାସ ଅନ୍ୟତମ । କୁଞ୍ଜବିହାରୀ ସୁନ୍ଦରରାୟଙ୍କଠାରୁ ପ୍ରାପ୍ତ ଏକ ଜୀର୍ଣ୍ଣ କୀଟଦ୍ରଷ୍ଟ ପୁରାତନ ପୋଥିରୁ ଉଦ୍ଧୃତ ଗୀତିନାଟ୍ୟ 'ପ୍ରହ୍ଲାଦ ଚରିତ' ଶିଷ୍ୟ ରାଧାକୃଷ୍ଣ ଦାସଙ୍କର ଅମର କୃତି । ଏହା ନାଟକ ହିସାବରେ ଉଚ୍ଚ ପ୍ରଶଂସା ଲାଭ କରିବା ସଙ୍ଗେ ସଙ୍ଗେ ନିକଟବର୍ତ୍ତୀ ଗ୍ରାମମାନଙ୍କରେ ଅଭିନୀତ ହୋଇ ଖୁବ୍ ପ୍ରସିଦ୍ଧି ଅର୍ଜନ କରିଥିଲା । ଏହା ମଞ୍ଚସ୍ଥ ହେବା ସମୟରେ ଛନ୍ଦୋବଦ୍ଧ ଉକ୍ତି ପ୍ରତ୍ୟୁକ୍ତି ମାଧ୍ୟମରେ କଥାବସ୍ତୁର ପରିବେଷଣ ତଥା ନାନାବିଧ ବାଦ୍ୟଯନ୍ତ୍ର ସହ ନାଟକୀୟ ଚରିତ୍ରମାନଙ୍କ ମୁଖରେ ମଧୁର କଣ୍ଠରେ ତାର ପ୍ରଖ୍ୟାପନ ଶ୍ରୋତୃବର୍ଗଙ୍କୁ ମନ୍ତ୍ରମୁଗ୍ଧ କରୁଥିଲା । ସାଧୁଙ୍କର ଆଶ୍ରମ ନିବାସୀ ଏଇଭଳି ଜଣେ ଶିଷ୍ୟଙ୍କ ପକ୍ଷରେ ଏତାଦୃଶ

✳ ଖାଉଁବଲ—ବଳଦଙ୍କ ପିଠିରେ ବୋଝ ଲଦି ଦୂର ଦୂରାନ୍ତରୁ ଦ୍ରବ୍ୟ ଆଣି କାରବାର କରୁଥିବା ବ୍ୟବସାୟୀଙ୍କୁ 'ଖାଉଁବଲ' କୁହାଯାଏ ।

Digitized by PPRACHIN, SOA

ମଞ୍ଚୋପଯୋଗୀ ଗୀତିନାଟ୍ୟ ରଚନା କରିବା କମ୍ ଗୌରବର କଥା ନୁହେଁ ।

## ସୁନ୍ଦର ଦାସଙ୍କ ଚଉପଦୀ ଛାନ୍ଦ

ସୁନ୍ଦର ଦାସ ଥିଲେ ଆଜନ୍ମ ବ୍ରହ୍ମଚାରୀ ଏବଂ ସେ ସନ୍ନ୍ୟାସବ୍ରତ ଅବଲମ୍ବନ କରି ଯୋଗ ସାଧନ ସଙ୍ଗେ ସଙ୍ଗେ ବେଦ ବେଦାନ୍ତ ପାଠ କରି ଆଧ୍ୟାତ୍ମ-ବିଜ୍ଞାନ ବିଶାରଦ ହୋଇପାରିଥିଲେ । ଦର୍ଶନ ଶାସ୍ତ୍ରମାନ ଅଧ୍ୟୟନ କରି ତାର ସାରାଂଶ ଶିଷ୍ୟମାନଙ୍କୁ ବିତରଣ କରୁଥିଲେ । ଅଧିକାଂଶ ଭେଦରେ ଏହି ଦର୍ଶନଶାସ୍ତ୍ର ତ୍ରିବିଧ—ଅଦ୍ୱୈତବାଦ, ଦ୍ୱୈତବାଦ, ଦ୍ୱୈତାଦ୍ୱୈତାବାଦ । ନିଷ୍କାମ ଧର୍ମରେ ଜ୍ଞାନର ଉଦୟ ହୁଏ । ତଦ୍ଦ୍ୱାରା ବ୍ରହ୍ମ ଦର୍ଶନ ସଙ୍ଗେ ସଙ୍ଗେ ମୋକ୍ଷଲାଭ ହୁଏ । ଏହି ବ୍ରହ୍ମ ବା ଈଶ୍ୱର 'ଏକ' ବା ଅଦ୍ୱୈତ ।

ବ୍ୟାସକବି ଫକୀରମୋହନ ସେନାପତି ସାଧୁ ସୁନ୍ଦର ଦାସଙ୍କ 'ଅଦ୍ୱୈତବାଦ ଚୌପଦୀ ଛାନ୍ଦ' ନାମରେ ହିନ୍ଦୀ ଭାଷାରୁ ଅନୁବାଦ କରି ଏକ ଓଡ଼ିଆ ରଚନାକୁ ତାଙ୍କ 'ଅବସର ବାସରେ' କବିତା ସଂକଳନରେ ସ୍ଥାନ ଦେଇଛନ୍ତି । ତାର କେତୋଟି ପଙ୍‌କ୍ତି ନିମ୍ନରେ ଉଦ୍ଧୃତ ହେଲା—

"ଶୁଣ ହେ ଅଦ୍ୱୈତ ବିଷୟ ପ୍ରକାଶ
ନାହଂ ନ ତ୍ୱଂ ନା ଜନ୍ତୁ ବାସ ।
ନାହିଁ ତ ପ୍ରପଞ୍ଚ ନାହିଁ ତ ପ୍ରସାର,
ନାହିଁ ତହିଁ ସୃଷ୍ଟି ସୃଜନ ସଂହାର ।
ନାହିଁ ତ ପ୍ରକୃତି ପୁରୁଷ ନ ଇଚ୍ଛା,
ନାହିଁ ତହିଁ କାଳ କର୍ମ ନାହିଁ ବାଞ୍ଛା ।" ଇତ୍ୟାଦି

ଉପର୍ଯ୍ୟୁକ୍ତ ଚୌପଦୀ ଛାନ୍ଦଟିର ମୂଳ ହିନ୍ଦୀ ରଚନା ସାଧୁ ସୁନ୍ଦର ଦାସଙ୍କ ଦ୍ୱାରା ବିରଚିତ ବୋଲି ମତ ପ୍ରକାଶ କରି ଡାଃ କୃଷ୍ଣମୋହନ ସାହୁ "ମହାତ୍ମା ସାଧୁ ସୁନ୍ଦର ଦାସ" ପୁସ୍ତକରେ ସ୍ଥାନ ଦେଇଛନ୍ତି ।

Digitized by PPRACHIN, SOA

ଅଧ୍ୟାପକ ଶ୍ରୀଧର ଦାସ ତାଙ୍କ ଲିଖିତ ଅମର ଚରିତ ମାଳାର 'ସାଧୁ ସୁନ୍ଦର ଦାସ" ପୁସ୍ତକରେ ମଧ୍ୟ ତାହାହିଁ ଉଦ୍ଧାର କରିଛନ୍ତି । ଏତଦ୍‌ବ୍ୟତୀତ କୁଞ୍ଜବିହାର ମଠ ପ୍ରକାଶିତ ଅଷ୍ଟମ ପୁସ୍ତକରେ ଦର୍ଶନ ଶାସ୍ତ୍ର ଅଧ୍ୟାପକ ଶ୍ରୀଯୁକ୍ତ ରତ୍ନାକର ପତି ଏ କବିତାକୁ ଇଂରାଜୀ ଗଦ୍ୟରେ ଅନୁବାଦ କରି ସାଧୁଙ୍କ ଧର୍ମ ଦର୍ଶନ ସମ୍ପର୍କରେ ବ୍ୟାଖ୍ୟା କରି ଯାଇଛନ୍ତି ।

କିନ୍ତୁ ବାସ୍ତବରେ ଉକ୍ତ କବିତାଟି କୁଞ୍ଜବିହାର ଆଶ୍ରମ ନିବାସୀ ସାଧୁ ସୁନ୍ଦର ଦାସଙ୍କ ଦ୍ୱାରା ବିରଚିତ କି ? ଅଧ୍ୟାପକ ଡଃ ନଟବର ସାମନ୍ତରାୟ "କ୍ୟାସକିଭ ଫକୀରମୋହନ" ଆଲୋଚନା ପୁସ୍ତକସ୍ଥ "ସାଧୁ ସୁନ୍ଦର ଦାସଙ୍କ ଅଦ୍ୱୈତବାଦ ଚୌପଦୀ ଛନ୍ଦ" ଶୀର୍ଷକ ପ୍ରବନ୍ଧରେ ଉପର୍ଯ୍ୟୁକ୍ତ ମତକୁ ଖଣ୍ଡନ କରି ପ୍ରମାଣମାନ ଉପସ୍ଥାପନ କରିଛନ୍ତି । ତାଙ୍କ ମତରେ ପ୍ରସିଦ୍ଧ ହିନ୍ଦୀ କବି ସନ୍ଥ ସୁନ୍ଦର ଦାସ ଓ କୁଞ୍ଜବିହାର ଆଶ୍ରମର ସାଧୁ ସୁନ୍ଦର ଦାସ ଏକ ବା ଅଭିନ୍ନ ନୁହଁନ୍ତି । ହିନ୍ଦୀକବି ସନ୍ଥ ସୁନ୍ଦର ଦାସ "ସୁନ୍ଦର ବିଳାସ", "ଜ୍ଞାନ ସମୁଦ୍ର" ଓ "ସୁନ୍ଦର କାବ୍ୟ" ପ୍ରଭୃତି ରଚନା କରିଛନ୍ତି । କବି ଫକୀର ମୋହନ ଯେଉଁ ହିନ୍ଦୀ କବିତାର ଓଡ଼ିଆ ଅନୁବାଦ କରିଛନ୍ତି, ତାହା "ସୁନ୍ଦର କାବ୍ୟ"ସ୍ଥ ଏକ ଉପଦେଶର ପ୍ରାନ୍ତଭାଗ ମାତ୍ର । ସନ୍ଥ ସୁନ୍ଦର ଦାସ ଯେ 'ଦାଦୂ' ସମ୍ପ୍ରଦାୟର ଅନ୍ତର୍ଭୁକ୍ତ, ସୁନ୍ଦର କାବ୍ୟରେ ଥିବା "ଗୁରୁମହିମା ଅଷ୍ଟକ"ରେ ଏହାର ପରିଚୟ ମିଳେ ।

"ମାରିବଂ ନିଜାନନ୍ଦ ଜାନୌ ଜୁଗାଦି
ନମୋ ଦେବ ଦାଦୂ, ନମୋ ଦେବ ଦାଦୂ ।"

ପୁଣି—

"ଦାଦୂ—ସତଗୁରୁ କେଜୁଚରଣ ବନ୍ଦତ ସୁନ୍ଦର ଦାସ
ତିନକୋ ମହିମା କହି ତହୁଁ ଜିତେନ ଜ୍ଞାନ ପ୍ରକାଶ ।"

ଏହି 'ଦାଦୂ' ସମ୍ପ୍ରଦାୟ ଯେ 'ଶ୍ରୀ' ସମ୍ପ୍ରଦାୟର ଏକ ଦୂରବର୍ତ୍ତୀ ଶାଖାବିଶେଷ, ଏହା ଦର୍ଶାଇବାକୁ ଯାଇ ଏକ ଶିଷ୍ୟ

Digitized by PPRACHIN, SOA

ପରମ୍ପରାର ତାଲିକା ଉକ୍ତର ସାମନ୍ତରାୟ ଉଦ୍ଧାର କରିଛନ୍ତି । ସନ୍ତ ସୁନ୍ଦର ଦାସ, ରଜ୍ଜବ, ଜନଗୋପାଳ, ଜଗନ୍ନାଥ, ମୋହନ ଦାସ ଓ ଖେମ ଦାସ ପ୍ରଭୃତି ଗୁରୁ "ଦାଦୂ ଦୟାଲ"ଙ୍କର ଶିଷ୍ୟ ଥିଲେ ବୋଲି ସେଥିରୁ ଜଣାଯାଏ । ସେ ଏହି ଶିଷ୍ୟ ପରମ୍ପରାକୁ କେତେକ ପରିମାଣରେ ସ୍ୱୀକୃତିରେ ମଧ୍ୟ ସ୍ୱୀକାର କରିଛନ୍ତି । ସେ ଥିଲେ ଅଦ୍ୱୈତ ପନ୍ଥୀ ଓ କବିରଙ୍କ ପରି ଶୂନ୍ୟ ଓ ନିରାକାରବାଦୀ, ପୁଣି ସହଜ ପନ୍ଥୀ, ତାଙ୍କ ରଚନାରୁ ଏହାର ପ୍ରମାଣ ମିଳେ ।

> "ଏକେଇ ସହଜ ସୁଭାବ ଗହି
> ସନ୍ତନ କହ୍ୟୋ ବିଳାସ
> ମନସା ବାଚୁ କର୍ମନା
> ତେହି ପଠଥି ସୁନ୍ଦର ଦାସ ।"

ସମଗ୍ର ଉତ୍ତର ଭାରତରେ ତେବେ ଏହି ସହଜ ପନ୍ଥୀ ଭକ୍ତମାନେ ଏକ ବିରାଟ ସାହିତ୍ୟସୌଧ ନିର୍ମାଣ କରିଥିଲେ ।

କୁଞ୍ଜବର ଆଶ୍ରମ ସନ୍ନ୍ୟାସୀ ସାଧୁ ସୁନ୍ଦର ଦାସ କ'ଣ ପ୍ରକୃତରେ ସେହି 'ଦାଦୂ'ଙ୍କର ଶିଷ୍ୟ ଏବଂ ନିରାକାର ସହଜ ପନ୍ଥୀ ? ତେବେ ସେ ଓଡ଼ିଶାର ବିଭିନ୍ନ ସମ୍ପ୍ରଦାୟରେ ପ୍ରଚଳିତ କେଉଁ ଧର୍ମ ଦର୍ଶନର ଦାୟାଦ ?

ଓଡ଼ିଆ ସାଧୁ ସୁନ୍ଦର ଦାସ ଓ ହିନ୍ଦୀ ସନ୍ତ ସୁନ୍ଦର ଦାସ ଯେ ଏକ ବ୍ୟକ୍ତି ନୁହନ୍ତି, ତାର ଅନେକ ପ୍ରମାଣ ସେ ପ୍ରଦାନ କରିଛନ୍ତି । ସାଧୁ ସୁନ୍ଦର ଦାସଙ୍କର ଆବିର୍ଭାବ ୧୭୨୦ ସାଲରେ ଓ ତିରୋଧାନ ୧୮୩୮ ସାଲରେ; କିନ୍ତୁ ସନ୍ତ ସୁନ୍ଦର ଦାସଙ୍କ "ଜ୍ଞାନ ସମୁଦ୍ର"ର ଉପସଂହାରରେ ଉଲ୍ଲେଖିତ ଯେ ଉକ୍ତ କାବ୍ୟ ସପ୍ତଦଶ ଶତାବ୍ଦୀର ମଧ୍ୟ ଭାଗରେ ରଚିତ । ଏହି ଉଭୟ ମହାପୁରୁଷଙ୍କ ଆବିର୍ଭାବ ଯେ ବହୁବର୍ଷ ଅନ୍ତରରେ, ଏଥିରେ ସନ୍ଦେହର ଅବକାଶ ନାହିଁ । ତେଣୁ ବ୍ୟାସକବି

Digitized by PPRACHIN, SOA

ଫକୀର ମୋହନ ସ୍ୱାମୀ ସନ୍ଥ ସୁନ୍ଦର ଦାସଙ୍କ ରଚନାକୁ ଅନୁବାଦ କରିଛନ୍ତି । ଏଥିରେ ସାଧୁ ସୁନ୍ଦର ଦାସଙ୍କ ନାମ ସଂଯୋଗର ଆବଶ୍ୟକତା ନାହିଁ ।

ଏ .ସମସ୍ତ ପ୍ରମାଣ ଦୃଷ୍ଟିରୁ ଡଃ ସାମନ୍ତରାୟଙ୍କ ଯୁକ୍ତିହିଁ ଗ୍ରହଣୀୟ ।

(ଲେଖକଙ୍କ ଅନୁମତି କ୍ରମେ ତାଙ୍କ ପ୍ରଣୀତ 'ମହାତ୍ମା ସାଧୁ ସୁନ୍ଦର' ପୁସ୍ତକରୁ ଏହି ଅଂଶଟିକ ଉଦ୍ଧାର କରାଯାଇଛି ।)

ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ,
ସାଧୁ ସୁନ୍ଦର ବିଦ୍ୟାପୀଠ,
ଶାଳଗାଁ, କଟକ ।



# ସାଧୁ ସୁନ୍ଦର ଦାସ : ଜୀବନ ଓ ସାଧନା

ଡଃ ଶ୍ରୀମତୀ ଲାବଣ୍ୟ ନାୟକ

ଓଡ଼ିଶାର ସାଂସ୍କୃତିକ ଇତିହାସରେ ୧୮ଶ ଶତାବ୍ଦୀର ଅପରାହ୍ଣ ଓ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ପାରମ୍ପରିକ ଚଳଣି ଏବଂ ଓଡ଼ିଶାର ସାମାଜିକ ଚେତନାରେ ପରିବର୍ତ୍ତନର ସୂତ୍ରପାତ ହୋଇଥିଲା । ମରହଟ୍ଟା ଶାସନରୁ ମୁକ୍ତ ହୋଇ ଓଡ଼ିଶା ଏହି କାଳରେ ଇଂରେଜ ଶାସନାଧୀନ ହୋଇଥିଲା । ଓଡ଼ିଶାରେ ରାଜପଣ କରୁଥିବା ଇଂରେଜ ଏବଂ ମରହଟ୍ଟାମାନଙ୍କର ଦୃଷ୍ଟିକୋଣ ଓ ଶାସନନୀତି ସମ୍ପୂର୍ଣ୍ଣ ଭିନ୍ନ ଥିଲା । ମରହଟ୍ଟା ଶାସନରେ ଓଡ଼ିଶାର ଲୋକ-ଜୀବନ ଲୁଣ୍ଠନ ଓ ଅତ୍ୟାଚାରର ସମ୍ମୁଖୀନ ହେଉଥିଲା । ରାଜସ୍ୱ ଆଦାୟ ବ୍ୟତୀତ ଦେଶର

Digitized by PPRACHIN, SOA

ବୈଷୟିକ ବା ବୌଦ୍ଧିକ ଉନ୍ନତି ପ୍ରତି କୌଣସି ଉଦ୍ୟମ ମରହଟ୍ଟା-ମାନଙ୍କ ଦ୍ୱାରା ହୋଇ ନ ଥିଲା । ଇଂରେଜମାନଙ୍କର ଆଗମନ ପରେ ବିଭିନ୍ନ ସ୍ତରରେ ନୂତନ ଉଦ୍ୟମର ପର୍ବ ଆରମ୍ଭ ହେଲା । ଦେଶର ଚଳଣିରେ ନୂତନତାର ଯେଉଁ ଅନୁପ୍ରବେଶ ଘଟିଲା, ତାହା ମୁଖ୍ୟତଃ ପାଶ୍ଚାତ୍ୟ ସଂସ୍କାର ଓ ଦର୍ଶନ-ଅଭିମୁଖୀ ହୋଇଥିଲା । ଫଳରେ ଦେଶର ତତ୍କାଳୀନ ବୁଦ୍ଧିଜୀବୀମାନଙ୍କ ମନରେ ବୌଦ୍ଧିକ ସଂଘର୍ଷର ଉତ୍ତେଜନା ସୃଷ୍ଟି ହୋଇଥିଲା । ସଂଘର୍ଷ ହେଲା ବିଭିନ୍ନ ଚିନ୍ତା ଓ ତତ୍ତ୍ୱକୁ ନେଇ । ଇଂରେଜ ମିଶନାରୀମାନଙ୍କର ଆଗମନ (୧୮୨୨) ଓ ତାଙ୍କର ଧର୍ମ-ପ୍ରଚାର ଆମ ଦେଶରେ ଗୋଟିଏ ପ୍ରକାର ଆନ୍ଦୋଳନ ସୃଷ୍ଟି କଲା । ମିଶନାରୀମାନଙ୍କ ପୂର୍ବରୁ ଓଡ଼ିଶାରେ ସର୍ବଧର୍ମ-ସମନ୍ୱୟୀ ଚିନ୍ତାଧାରାର ଏକ ବିଚାର-ମଣ୍ଡପ ପ୍ରସ୍ତୁତ ହୋଇ ସାଇଥିଲା । ଏହାର ପ୍ରତିଷ୍ଠାତା ଓ ପ୍ରଚାରକ ଥିଲେ ମହାତ୍ମା ସାଧୁ ସୁନ୍ଦର ଦାସ ।

## ଦର୍ଶନ ଓ ମତବାଦ

ସାଧୁ ସୁନ୍ଦର ଦାସ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ଦଶକରେ (୧୭୨୦) ଜନ୍ମଗ୍ରହଣ କରିଥିଲେ । ଇଂରେଜ ମିଶନାରୀମାନଙ୍କର ଓଡ଼ିଶା ଆଗମନ ବେଳକୁ ସେ ବର୍ଷୀୟାନ୍ ବୃଦ୍ଧ । ଖ୍ରୀ: ୧୮୨୨ରେ ମିଶନାରୀମାନେ ଶ୍ରୀରାମପୁରଠାରୁ ଆସି କଟକରେ ପହଞ୍ଚିଲେ ଏବଂ ସାଧୁ ସୁନ୍ଦରଙ୍କ ଧର୍ମମତ, ଦର୍ଶନ, ଖ୍ୟାତି ଓ ପ୍ରତିଷ୍ଠା ସମ୍ପର୍କରେ ଅବଗତ ହୋଇ ଚାରିବର୍ଷ ପରେ ଖ୍ରୀ: ୧୮୨୬ ଅକ୍ଟୋବର ମାସ ୧୦ ତାରିଖରେ ତାଙ୍କୁ ପ୍ରଥମେ ଭେଟିଥିଲେ । ଏହାକୁ ଓଡ଼ିଶା ଇତିହାସର ଏକ ବିଶିଷ୍ଟ ଦିନ ଭାବରେ ଗ୍ରହଣ କରାଯାଇପାରେ । କାରଣ ଏହି ଦିନ ସାଧୁ ସୁନ୍ଦର ଦାସ ବିଭିନ୍ନ ଶାସ୍ତ୍ରକୁ ଭିତ୍ତିକରି ଏକ ସାରଗର୍ଭକ ପ୍ରବଚନ ସମବେତ ଜନତାଙ୍କ ଉଦ୍ଦେଶ୍ୟରେ ପ୍ରଦାନ କରିଥିଲେ । ସାଧୁଙ୍କର ପାଣ୍ଡିତ୍ୟ ଓ ଧୀଷଣା ଶକ୍ତି ମିଶନାରୀମାନଙ୍କୁ ଆଶ୍ଚର୍ଯ୍ୟ ଓ ଅଭିଭୂତ କରି ଦେଇଥିଲା । କାରଣ ସାଧୁଙ୍କ ଉପଦେଶର ମୂଳମନ୍ତ୍ର ଥିଲା—"ସବୁ ଧର୍ମ ସମାନ । ଈଶ୍ୱର ହିଁ ଏକମାତ୍ର ପିତା ଏବଂ ଜଗତର

Digitized by PPRACHIN, SOA

ପ୍ରତ୍ୟେକ ପ୍ରାଣୀ ତାଙ୍କର ପୁତ୍ର । ଈଶ୍ୱର ଏକ, ସେ ସର୍ବତ୍ର ବିଦ୍ୟମାନ ।”

ଏହା ମିଶନାରୀମାନଙ୍କୁ ଏତେ ଆନନ୍ଦ ଦେଇଥିଲା ଯେ ସେମାନେ ଏହାକୁ ତାଙ୍କ ରିପୋର୍ଟ ଜରିଆରେ ଲଣ୍ଡନକୁ ପଠାଇଥିଲେ । ସଟନ୍ ସାହେବ ମଧ୍ୟ ସେହି ବିନର (ଖ୍ରୀ: ୧୮୨୬ ଅକ୍ଟୋବର ୧୦) ରିପୋର୍ଟରେ ସାଧୁ ସୁନ୍ଦରଙ୍କ ରୂପ, ଗୁଣ ଓ ଆଧ୍ୟାତ୍ମିକ ଜ୍ଞାନ ସମ୍ପର୍କରେ ସୂଚନା ଦେଇଥିଲେ । ହିନ୍ଦୁ ଚଳଣିରେ ଥିବା ଅସ୍ପୃଶ୍ୟତା, ବାଇ-ବେଲରେ ଥିବା ଦଶ ଆଜ୍ଞା ଓ ଯୀଶୁଙ୍କର ପ୍ରାଣଦାନର ମହତ୍ତ୍ୱ ସମ୍ପର୍କିତ ଷଠୋଟି ପ୍ରଶ୍ନର ସନ୍ତୋଷଜନକ ଉତ୍ତର ପାଇଥିବା ବିଷୟ ମଧ୍ୟ ଏଥିରେ ବର୍ଣ୍ଣିତ ହୋଇଥିଲା । ମିଶନାରୀମାନେ ସାଧୁ ସୁନ୍ଦରଙ୍କୁ ସ୍ୱୟଂ ଖ୍ରୀଷ୍ଟଙ୍କର ଅବତାର ବୋଲି ବିଶ୍ୱାସ କରୁଥିଲେ । ଲେସି ସାହେବ ଓ ସଟନ୍ ସାହେବଙ୍କ ରିପୋର୍ଟରୁ ଜଣାଯାଏ ଯେ ସାଧୁ ସୁନ୍ଦର ଯୀଶୁଙ୍କ ପରି ବାରଗୋଟି ଅନ୍ତରଙ୍ଗ ଶିଷ୍ୟ କରିଥିଲେ । ସେ ନିଜେ ମଧ୍ୟ ଅହଂ-ଭାବ ତ୍ୟାଗକରି ନିଜ ଦର୍ଶନ ସମ୍ପର୍କରେ କହୁଥିଲେ ଯେ ଯୀଶୁଙ୍କର ଓ ତାଙ୍କର ଆତ୍ମାର ମେଳ ଅଛି । ମିଶନାରୀମାନେ ଓଡ଼ିଶାକୁ ଆସିବା ପୂର୍ବରୁ ସୁନ୍ଦର ବାବାଜୀ (ସାଧୁ ସୁନ୍ଦର ଦାସ) ଯୀଶୁଖ୍ରୀଷ୍ଟଙ୍କ ଉନ୍ନତ ଭାବକୁ ଲୋକମାନଙ୍କ ମଧ୍ୟରେ ପ୍ରଚ୍ଚର କରି ଗୁରୁ ରୂପେ ପୂଜା ପାଉଥିଲେ । ତେଣୁ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବା କେତେକ ଶିଷ୍ୟ ସ୍ୱୟଂ ଯୀଶୁ ଖ୍ରୀଷ୍ଟ ସାଧୁ ସୁନ୍ଦର ରୂପେ ଜନ୍ମ ଗ୍ରହଣ କରିଥିବା ବିଷୟ ପାଦ୍ରୀ-ମାନଙ୍କୁ ଜଣାଇଥିଲେ । ଏ ବିଷୟ ୧୮୩୯ ସାଲର ଜେନେରାଲ ବାପ୍ଟିଷ୍ଟ ରିପୋର୍ଟରେ ଦେଖିବାକୁ ମିଳେ ।

—Sunder Das assuming the character of Christ.”

“Mr. John Brown Myers, Editor of the Centenary volume of the Baptist Missionary Society, London (1792 to 1892), pp. 237-252.

Digitized by PPRACHIN, SOA

ଏଥିରୁ ମନେହୁଏ ସାଧୁ ସୁନ୍ଦର ଦାସଙ୍କ ଦର୍ଶନ ଓ ମତବାଦ ସେ ସମୟରେ ଖୁବ୍ ପ୍ରଭାବଶାଳୀ ଥିଲା ଏବଂ ଏହା ମଧ୍ୟ ପାଶ୍ଚାତ୍ୟ ମିଶନାରୀମାନଙ୍କ ମନକୁ ଖୁବ୍ ସ୍ପର୍ଶ କରି ପାରିଥିଲା ।

## ବୌଦ୍ଧିକ ସଂଘର୍ଷ ଓ ସାମାଜିକ ସଂସ୍କାର

ସାଧୁ ସୁନ୍ଦର ସମାଜର ସଂସ୍କାର ଚାହୁଁଥିଲେ ଓ ସେଥିପାଇଁ ସର୍ବଧର୍ମର ସମନ୍ୱୟରେ ସେ ଏକ ନୂତନ ଧର୍ମମାର୍ଗର ପ୍ରଚଳନ ପାଇଁ ଆଗ୍ରହୀ ଥିଲେ । ଏହା ସତ ଯେ ବିଭିନ୍ନ ସମୟରେ ଧର୍ମ ନାମରେ ବିଭିନ୍ନ ପ୍ରକାର କୁସଂସ୍କାର ପ୍ରତ୍ୟେକ ଧର୍ମରେ ପ୍ରବେଶ କରିଥାଏ । ଏହା ଜାତି, ଧର୍ମ ଓ ସମଗ୍ର ସମାଜପାଇଁ ଗୋଟିଏ ଗୋଟିଏ ବିଷବୃକ୍ଷ ତୁଲ୍ୟ—ଏକଥା ସାଧୁ ସୁନ୍ଦର ଖୁବ୍ ଭଲ ଭାବରେ ହୃଦୟଙ୍ଗମ କରିଥିଲେ । ତେଣୁ ଜ୍ଞାନର ଖଡ଼୍‌ଗରେ ସେହି ବିଷବୃକ୍ଷର ଛେଦନ ପାଇଁ ସେ ପ୍ରୟାସୀ ହେଉଥିଲେ । ସେ ନିଜେ ଜଣେ ହିନ୍ଦୁ ବୈଷ୍ଣବ ହୋଇ ମଧ୍ୟ ହିନ୍ଦୁମାନଙ୍କର ସଂକୀର୍ଣ୍ଣତା ଓ କଳୁଷତା ସମ୍ପର୍କରେ ବହୁବାର ନିରପେକ୍ଷ ମତ ପ୍ରଦାନ କରିଛନ୍ତି । ସେହିପରି ସେ ଯେଉଁଠି ଅନାଚାର ଦେଖୁଥିଲେ ଖ୍ରୀଷ୍ଟାନ ପାଦ୍ରୀମାନଙ୍କ କର୍ମର ତୀବ୍ର ପ୍ରତିବାଦ ମଧ୍ୟ କରୁଥିଲେ । ଖ୍ରୀ: ୧୮୩୦ରେ ପାଦ୍ରୀମାନେ ହିନ୍ଦୁ ନାରୀଙ୍କୁ ତାଙ୍କର ସ୍ୱାମୀ ଓ ଅଭିଭାବକଙ୍କ ବିନାନୁମତିରେ ଜୀବନ ଦେଇ ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ କରିବାରୁ ସାଧୁ ସୁନ୍ଦର କଲେକ୍ଟରଙ୍କଠାରେ ଅଭିଯୋଗ କରିଥିଲେ । ଗଣ୍ଡଗୋଳଆଶଙ୍କା କରି କଲେକ୍ଟର ସେହି ମକଦ୍ଦମାକୁ ଖାରଜ କରିଦେବାରୁ ସେ ତତ୍କାଳୀନ ଜିଲ୍ଲାଜଜ ଉଇଲସ୍ୱନ୍ ଉଇଲକିନ୍‌ସନଙ୍କଠାରେ ପୁନଃ ଦରଖାସ୍ତ କରିଥିଲେ । ଫଳରେ ମିଶନାରୀମାନଙ୍କୁ ୫୦ ଟଙ୍କା ଜୋରିମାନା ଓ ଭବିଷ୍ୟତରେ ଏତାଦୃଶ କାର୍ଯ୍ୟରୁ ନିବୃତ୍ତ ରହିବାପାଇଁ ନିର୍ଦ୍ଦେଶ ଦିଆଗଲା ।

ସାଧୁ ସୁନ୍ଦରଙ୍କୁ ଖ୍ରୀଷ୍ଟାନ୍ କରିବାପାଇଁ ପାଦ୍ରୀମାନେ ଯେଉଁ ଆଶା ପୋଷଣ କରିଥିଲେ ତାହା ବିଫଳ ହୋଇଥିଲା । ସଟନ୍ ସାହେବ ଲେଖିଥିଲେ, ସାଧୁ ସୁନ୍ଦର ଯଦିଓ ଜଣେ ମହାପୁରୁଷ, ତଥାପି

Digitized by PPRACHIN, SOA

ଖ୍ରୀଷ୍ଟଧର୍ମ ପ୍ରଚାର ନିମନ୍ତେ ସେ ଗୋଟିଏ ପ୍ରଧାନ ଶତ୍ରୁ । କିନ୍ତୁ ଗଙ୍ଗାଧର ଷଡ଼ଙ୍ଗୀ ପ୍ରଭୃତି ନଗରର କେତେଜଣ ଶିଷ୍ୟଙ୍କୁ ଖ୍ରୀଷ୍ଟାନ ହେବାପାଇଁ ସାଧୁ ସୁନ୍ଦର ଅନୁମତି ଦେଇଥିଲେ । ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବାକୁ ଯାଇ ପ୍ରତ୍ୟେକ ସାଧୁ, ସନ୍ଥ ଓ ମହାମନୀଷୀମାନଙ୍କୁ ଯେପରି ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼େ, ସେହିପରି ପାଦ୍ରୀ-ମାନଙ୍କ ଚକ୍ରାନ୍ତରେ ସାଧୁ ସୁନ୍ଦରଙ୍କୁ ଏକମାସ କାରାଦଣ୍ଡ ଭୋଗିବାକୁ ହେଲା । ସାଧାରଣତଃ ଚିନ୍ତାଶୀଳ ଜ୍ଞାନୀମାନେ ବୌଦ୍ଧିକ ସଂଘର୍ଷରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଯେଉଁ ପୁରସ୍କାର ପାଇଥାନ୍ତି, ସାଧୁ ସୁନ୍ଦରଙ୍କୁ ତାହାହିଁ ମିଳିଲା । କିନ୍ତୁ ମାଜିଷ୍ଟ୍ରେଟ୍ ଖୁବ୍ ଶୀଘ୍ର ସାଧୁ ସୁନ୍ଦରଙ୍କ ବକ୍ତବ୍ୟର ସାରବତ୍ତା ହୃଦୟଙ୍ଗମ କରି ତାଙ୍କୁ ଜେଲ୍‌ରୁ ଖଲାସ କରିଦେଲେ । ସେଦିନ କଟକ ସହରରେ ବିରାଟ ଜନସମାବେଶ ଓ ସର୍ବଧର୍ମାବଲମ୍ବୀମାନଙ୍କର ପଙ୍‌କ୍ତି ଭୋଜନର ବ୍ୟବସ୍ଥା ହୋଇଥିଲା ।

## ପରମ୍ପରାର ଅନୁବର୍ତ୍ତନ ନା ନୂତନତାର ସଂଯୋଗ

ସାଧୁ ସୁନ୍ଦର ସବୁ ଧର୍ମର ସାରତତ୍ତ୍ୱ ସମନ୍ୱୟରେ ଗଠିତ ଏକ ନୂତନ ଚେତନାକୁ ଜନସାଧାରଣଙ୍କ ମଧ୍ୟରେ ଚଳେଇ ନେବାରେ ପ୍ରୟାସୀ ହୋଇଥିଲେ ମଧ୍ୟ ଅନ୍ୟ ମତବାଦ ସହିତ ଏଇ ନୂତନ ମତ-ବାଦର ମେଳ ଥିଲା । କଥିତ ଅଛି, ସେ ଶୂନ୍ୟବାଣୀ ଶୁଣି ତପସ୍ୟାରତ ଥିବା ସମୟରେ ଭଗବତ ଗୀତା, ସିଦ୍ଧବାକ୍ୟ, ମାଳିକା, ବେଦ ବେଦାନ୍ତ, ରାମାୟଣ, ମହାଭାରତ, ନ୍ୟାୟତତ୍ତ୍ୱ, ଦର୍ଶନ, ସାଂଖ୍ୟ ପାତଞ୍ଜଳୀ ମୀମାଂସା ଓ ତର୍କଶାସ୍ତ୍ର ଆଦି ଆଲୋଚନା କରିଥିଲେ । ପୂର୍ବବର୍ତ୍ତୀ ସାଧକମାନଙ୍କ ମାର୍ଗକୁ ମଧ୍ୟ ପରୀକ୍ଷା ନିରୀକ୍ଷା କରିଥିଲେ । ତେଣୁ ତାଙ୍କ ପ୍ରଚାରିତ ଧର୍ମଧାରଣା ପ୍ରାଚୀନ ଶାସ୍ତ୍ରବର୍ଣ୍ଣିତ ତତ୍ତ୍ୱ ଉପରେ ହିଁ ଆଧାରିତ । ସବୁ ଧର୍ମର ନିର୍ଦ୍ଦେଶ ପରି ପ୍ରଲୋଭନକୁ ସେ ପ୍ରଶ୍ରୟ ଦେଉ ନ ଥିଲେ । ରଜା, ମହାରଜା, ଧନୀ ଶିଷ୍ୟମାନେ ବିପୁଳ ଐଶ୍ୱର୍ଯ୍ୟ ଦାନ କରିବାକୁ ଆଗ୍ରହୀ ହୋଇଥିଲେ ମଧ୍ୟ ସେ ତାହାକୁ ଗ୍ରହଣ ନକରି କହୁଥିଲେ, "ଏ ଜ୍ଞାନ ଶୂନ୍ୟ ଜ୍ଞାନ ଓ ଏ ଆଶ୍ରମ ଶୂନ୍ୟ

Digitized by PPRACHIN, SOA

ଆଶ୍ରମ ଅଟେ । ଧନ ସମ୍ପତ୍ତି ଏ ଜଗତରେ କିଛି ନୁହ । କେବଳ ଜ୍ଞାନହିଁ ସତ୍ୟ ଓ ସର୍ବଶେଷ ଅଟେ ।"

ପ୍ରକୃତ ଜ୍ଞାନ ପ୍ରାପ୍ତି ପାଇଁ ତାଙ୍କ ଆଶ୍ରମରେ ଏକ ବୈଦାନ୍ତିକ ବିଦ୍ୟାଳୟ ସେ ପ୍ରତିଷ୍ଠା କରିଥିଲେ ଏବଂ ତହିଁରେ ପାଞ୍ଚଶତ ଶିଷ୍ୟ ବେଦ,ପୁରାଣ, ସଂହିତା, ଅଦ୍ୱୈତ ଦର୍ଶନ, ବୈଷ୍ଣବ ତନ୍ତ୍ର ଇତ୍ୟାଦି ଶାସ୍ତ୍ର ଅଧ୍ୟୟନ କରୁଥିଲେ । ସେମାନେ ଏହାକୁ ଶିକ୍ଷାକରି ଦୈନନ୍ଦିନ କାର୍ଯ୍ୟରେ କିପରି ବ୍ୟବହାର କରିବେ ସେଥିପ୍ରତି ଦୃଷ୍ଟି ଦିଆଯାଉଥିଲା । ଶିକ୍ଷା ଅର୍ଥ ଭଲ ମଣିଷ ଗଢ଼ିବା ବୋଲି ସେ ବୁଝୁଥିଲେ । ଶିକ୍ଷାପ୍ରତି ସାଧୁ ସୁନ୍ଦରଙ୍କର ଥିବା ନୂତନ ଆଭିମୁଖ୍ୟ ଓ ଅଭିରୁଚିର ପରିଚୟ ଇଂରେଜମାନେ ପାଇଥିବାରୁ ମରହଟ୍ଟା ଶାସନ ପରେ ଭାଙ୍ଗି ପଡ଼ିଥିବା ଟୋଲ ଓ ବିଦ୍ୟାଳୟମାନଙ୍କର ପରିଚାଳନା ଦାୟିତ୍ୱ ସାଧୁ ସୁନ୍ଦରଙ୍କୁ ଦେଇଥିଲେ ଏବଂ ତାଙ୍କୁ ଶିକ୍ଷା ବିଭାଗର ସୁପରିଟେଣ୍ଡେଣ୍ଟ୍ କରିବା ପାଇଁ ବଙ୍ଗଳା ସରକାରଙ୍କୁ ଲେଖିଥିଲେ । ଶିକ୍ଷା ସଂସ୍କାର ଲାଗି ସାଧୁ ସୁନ୍ଦରଙ୍କ ପ୍ରାଣରେ ଥିଲା ଅଶେଷ ସ୍ଫୂର୍ତ୍ତି, ମନରେ ଥିଲା ଅଦ୍ଭୁତ ଆଗ୍ରହ । ପୁଣି ତାଙ୍କ ଶିକ୍ଷାକେନ୍ଦ୍ରର ପୁସ୍ତକାଗାରରେ ପ୍ରଚୁର ପୁସ୍ତକ ଓ ପୋଥି ମଧ୍ୟ ସଞ୍ଚିତ ଥିଲା । ତେଣୁ ଇଂରେଜମାନେ ସାଧୁ ସୁନ୍ଦରଙ୍କ ଉଦ୍ଦେଶ୍ୟରେ କହିଥିଲେ, "ଆପଣ ସେହି ଭଙ୍ଗାରୁଜା ଟୋଲ ବା ବିଦ୍ୟାଳୟଗୁଡ଼ିକ ପରିଚାଳନା କରନ୍ତୁ ଯେ ପ୍ରକାର ଆଧୁନିକ ଧରଣର ଶିକ୍ଷା ତହିଁରେ ଦିଆଯାଇ ପାରିବ । କାରଣ ଆପଣ ଉତ୍କଳର ଶିକ୍ଷା-ଦାତା ଓ ଆପଣଙ୍କର ଆଶ୍ରମ ଉତ୍କଳର ଶିକ୍ଷାକେନ୍ଦ୍ର ଅଟେ ।" ସାଧୁ ସୁନ୍ଦର ଶିକ୍ଷା, ସଂସ୍କୃତି ଓ ଧର୍ମର ନିରୀକ୍ଷା କରି ତା'ର ବିକାଶରେ ନୂତନ ଶିକ୍ଷାରୀତି ଓ ଧର୍ମଧାରା ପ୍ରଣୟନ ପାଇଁ ପ୍ରୟାସୀ ହୋଇଥିଲେ ।

## ପ୍ରଚଳିତ ଅନ୍ୟାନ୍ୟ ମତବାଦ : ସାଧୁ ସୁନ୍ଦରଙ୍କ ସାମ୍ୟ ଓ ବୈଷମ୍ୟ

ସାଧୁ ସୁନ୍ଦରଙ୍କ ସମକାଳୀନ ସମାଜରେ କିଛି ତଦନୁରୂପ ଆଧ୍ୟାତ୍ମିକ ମତବାଦ ଅହରହ ପ୍ରଚଳିତ ଥିଲା । ଯେତେବେଳେ ବଙ୍ଗ

*

Digitized by PPRACHIN, SOA

ଦେଶର ବ୍ରାହ୍ମଧର୍ମର ପ୍ରବକ୍ତା ରାଜା ରାମମୋହନ ରାୟ ଜଣେ ଏକେଶ୍ବରବାଦୀ ସମାଜ ସଂସ୍କାରକ ଥିଲେ । ହିନ୍ଦୁ ଧର୍ମର ପ୍ରତିମା ପୂଜା ଓ ବହୁ ଦେବତାର ଅସ୍ତିତ୍ବକୁ ସେ ଆଦୌ ସ୍ବୀକାର କରୁ ନ ଥିଲେ ଓ ବହୁ ଧର୍ମର ଦୋଷ-ଦୁର୍ବଳତା ସହିତ ଖ୍ରୀଷ୍ଟ ଧର୍ମ ଓ ପୃଥିବୀରେ ସୁପ୍ରତିଷ୍ଠିତ ଅନ୍ୟାନ୍ୟ ଧର୍ମକୁ ଆଲୋଚନା କରି ସେଥିରେ ଥିବା ତ୍ରୁଟି ପ୍ରଦର୍ଶନରେ ମଧ୍ୟ ସେ ପଶ୍ଚାତ୍‌ପଦ ହେଉ ନଥିଲେ । ତାଙ୍କର ସେହି ସଂସ୍କାରବାଦୀ ମତବାଦକୁ ପୁସ୍ତକ ଆକାରରେ ମୁଦ୍ରିତକରି ସେ ବିନା ମୂଲ୍ୟରେ ବିତରଣ କରୁଥିଲେ । କାରଣ ସେ ଅନୁଭବ କରୁଥିଲେ ଯେ, ମୌଖିକ ପ୍ରଚାର ଅପେକ୍ଷା ଅକ୍ଷର ସୃଷ୍ଟିରେ ଅକ୍ଷୟ ମୂଲ୍ୟ ରହିଥାଏ । ସାମଗ୍ରିକଭାବେ ରାମମୋହନଙ୍କ କାର୍ଯ୍ୟକଳାପର ମୂଲ୍ୟାୟନ କଲେ ଜଣାଯାଏ ସେ ଏକେଶ୍ବରବାଦୀ ତଥା ବ୍ରହ୍ମରେ ବିଶ୍ବାସୀ ଥିଲେ ଏବଂ ଜଣେ ସଂସ୍କାରକ ଥିଲେ ।

ସେହିପରି ସାଧୁ ସୁନ୍ଦର ମଧ୍ୟ ଏକେଶ୍ବରବାଦୀ ଥିଲେ ଏବଂ ହିନ୍ଦୁ ଧର୍ମର ପ୍ରତିମା ପୂଜାକୁ ସମର୍ଥନ କରୁ ନ ଥିଲେ । ଖ୍ରୀଷ୍ଟ ଧର୍ମର ଯାହା ଅଶୋଭନୀୟ ଗୁଣ ଥିଲା ସେ ତାକୁ ବର୍ଜନ କରିବା ଲାଗି ଇଙ୍ଗିତ ଦେଉଥିଲେ । ରାମମୋହନଙ୍କ ପରି ସାମାଜିକ କୁସଂସ୍କାର ଦୂର କରିବା ସାଧୁ ସୁନ୍ଦରଙ୍କ ପ୍ରଧାନ ଲକ୍ଷ୍ୟ ଥିଲା । ତାଙ୍କୁ କେତେକ ଦାର୍ଶନିକ ବେଦାନ୍ତବାଦ୍ ନାମରେ ଆଖ୍ୟାତ କରିଥିଲେ । କାରଣ ବେଦାନ୍ତ ମତରେ ବ୍ରହ୍ମ ହିଁ ସତ୍ୟ, ଅନ୍ୟ ସବୁ ମିଥ୍ୟା ।

ଅନ୍ୟପକ୍ଷରେ ମହିମାଧର୍ମୀମାନେ ମଧ୍ୟ ଦେବାଦେବୀଙ୍କୁ ବିଶ୍ବାସ କରନ୍ତି ନାହିଁ କିମ୍ବା ମୂର୍ତ୍ତିପୂଜାରେ ତାଙ୍କର ପ୍ରତ୍ୟୟ ନ ଥାଏ । ପୂଜା ସମୟରେ ସେମାନେ ମନ୍ତ୍ର, ଯନ୍ତ୍ରର ପ୍ରୟୋଜନୀୟତା ଉପଲବ୍‌ଧି କରନ୍ତି ନାହିଁ । ପରଂବ୍ରହ୍ମ ହିଁ କେବଳ ସେମାନଙ୍କର ଆରାଧ୍ୟ, ଅନ୍ୟ କେହି ନୁହେଁ । ତେଣୁ ସାଧୁ ସୁନ୍ଦର ମହିମା ଧର୍ମୀଙ୍କ ପରି ପରଂବ୍ରହ୍ମଙ୍କୁ ସ୍ବୀକାର କରୁଥିଲେ ଏବଂ ପ୍ରତିମା ପୂଜା ଇତ୍ୟାଦିକୁ ସତ୍‌ପରେଣାସ୍ତି ଅସ୍ବୀକାର କରୁଥିଲେ । ମହିମା ଗୋସ୍ବାମୀଙ୍କର ୧୮୬୨ ମସିହାରେ ଓଡ଼ିଶା ଆଗମନ ହୋଇଥିଲା ଏବଂ ସେତେବେଳକୁ ସାଧୁ ସୁନ୍ଦର ଦାସ

Digitized by PPRACHIN, SOA

ମଧ୍ୟ ଜୀବିତ ଥିଲେ । ତେଣୁ ଯେତେବେଳେ ରାମମୋହନ ରାୟ ଏକେଶ୍ବରବାଦର ପ୍ରଚାର କରୁଥିଲେ ଏବଂ ମହିମା ଗୋସ୍ୱାମୀଙ୍କର ଶୂନ୍ୟ ଚେତନା ଯେତେବେଳେ ବିସ୍ତାର ଲାଭ କରୁଥିଲା, ସେତିକିବେଳେ ସାଧୁ ସୁନ୍ଦର ଦାସ ସବୁ ଧର୍ମରେ ଲୁଚି ରହିଥିବା କୁସଂସ୍କାର ତ୍ୟାଗ କରି ସର୍ବଧର୍ମର ସାରତତ୍ତ୍ୱ ଉପରେ ପ୍ରତିଷ୍ଠିତ ଧର୍ମପାଇଁ ପ୍ରୟାସୀ ହୋଇଥିଲେ । ତାଙ୍କର ଏହି ମହତ୍ ଉଦ୍ଦେଶ୍ୟକୁ କାର୍ଯ୍ୟକାରୀ କରିବା-ପାଇଁ ରାଜା ରାମମୋହନଙ୍କ ପରି ସେ ମଧ୍ୟ ପତ୍ରପତ୍ରିକାର ସାହାଯ୍ୟ ନେଇଥିଲେ ।

## କୁଜୀବର ପତ୍ର : ଅଭିମୁଖ୍ୟ ଓ ଅବଦାନ

ସାଧାରଣ ସମାଜ ଓ ଧର୍ମ କ୍ଷେତ୍ରରେ କିଛି ପରିବର୍ତ୍ତନ ତଥା ସଂସ୍କାର ଆଣିବା ପାଇଁ ସାଧୁ ସୁନ୍ଦର ବିଧିବଦ୍ଧ ଭାବରେ ଯାହା ଚିନ୍ତା କରୁଥିଲେ ସେଗୁଡ଼ିକୁ ସେ 'କୁଜୀବର ପତ୍ର' ଜରିଆରେ ପ୍ରକାଶ କରୁଥିଲେ । ଏହି ପତ୍ରିକାଟି କୁଜୀବର ଆଶ୍ରମର ସାଧୁ ସୁନ୍ଦରଙ୍କ ସମ୍ପାଦନାରେ ପ୍ରକାଶିତ ହେଉଥିଲା । ରାମମୋହନ ରାୟଙ୍କ ତତ୍ତ୍ୱାବଧାନରେ ପ୍ରକାଶ ପାଉଥିବା ପତ୍ର 'ସମ୍ବାଦ କୌମୁଦୀ'ର ବହୁ ପୂର୍ବରୁ ଅର୍ଥାତ୍ ମରହଟ୍ଟାମାନଙ୍କ ଶାସନ ସମୟରୁ ଏହା ଆତ୍ମପ୍ରକାଶ କରିଥିବା ଜଣାଯାଏ । ସେତେବେଳେ ପ୍ରିଣ୍ଟିଂ ପ୍ରେସର ଅଭାବ ଥିବା ହେତୁ ତାହା ହାତଲେଖା ଆକାରରେ ପ୍ରକାଶ ପାଉଥିଲା । ଏହାକୁ ନିର୍ଭୁଲ ଓ ତ୍ରୁଟିହୀନ କରିବାପାଇଁ ସାଧୁ ସୁନ୍ଦର ସମ୍ପୂର୍ଣ୍ଣଭାବେ ଯତ୍ନ କରୁଥିଲେ । ସାଧୁଙ୍କର ଦୁଇ ଶିଷ୍ୟ ଗଙ୍ଗାଧର ଷଡ଼ଙ୍ଗୀ ଓ ରାମଚନ୍ଦ୍ରଜୀ ଯାଚକ ଏହାର ସହକାରୀ ସମ୍ପାଦକ ଥିବା ସତ୍ତ୍ୱେ ଆତ୍ମପ୍ରକାଶ ପୂର୍ବରୁ ଏହା ବୈଦାନ୍ତିକ ସ୍କୁଲର ଗୁରୁ ଓ ଶିକ୍ଷକଙ୍କ ଦ୍ୱାରା ସମାଲୋଚିତ ହେଉଥିଲା । ଏହା ତାଳପତ୍ରରେ କମ୍ବା କଟକ ନିକଟବର୍ତ୍ତୀ ପଦ୍ମପୁର ଗ୍ରାମରେ ସେ ସମୟରେ ତିଆରି ହେଉଥିବା 'ହରିତାଳ' କାଗଜରେ ହାତରେ ଲେଖା ହେଉଥିଲା । ୧୬୭୯ ମସିହାରେ ଏହା ପ୍ରକାଶର ପ୍ରଥମ ଆଲୋକ ଦେଖିଥିବା ଜଣାଯାଏ । ୧୮୦୦ ମସିହାରେ ହିନ୍ଦୀ ଓ ମରହଟ୍ଟୀ ଭାଷାରେ ଏହାର ହାତଲେଖା ଅନୁବାଦ ପ୍ରକାଶ ପାଇଥିବାରୁ

*

Digitized by PPRACHIN, SOA

ଏହା ନିଶ୍ଚିତ ଭାବରେ ଅଷ୍ଟାଦଶ ଶତାବ୍ଦୀରେ ପ୍ରଥମେ ଆତ୍ମପ୍ରକାଶ କରିଥିଲା ବୋଲି ଧାରଣା ହୁଏ । ଯାହାହେଉ, ଏହା ହାତରେ ଲେଖା ହୋଇ କଟକ ବଜାର, ମିଶିନାରୀ କେନ୍ଦ୍ର ଓ ତାଙ୍କ ଭକ୍ତମାନଙ୍କ ଘରେ ଟାଙ୍ଗି ଦିଆଯାଉଥିଲା । ଏପରି ଭାବରେ ଜନସାଧାରଣଙ୍କ ମଧ୍ୟରେ ଏହାର ପ୍ରଚାର କରାଯାଉଥିଲା ।

ଏହି ପତ୍ର ପାକ୍ଷିକ, ସାପ୍ତାହିକ ଓ କେବେ କେବେ ଦୈନିକ ଭାବରେ ପ୍ରକାଶ ପାଉଥିଲା । ଏହା ଓଡ଼ିଆରେ ସର୍ବପ୍ରଥମ ହେଲେ ମଧ୍ୟ ଏକ ଶକ୍ତିଶାଳୀ ପତ୍ର । କାରଣ ଏଥିରେ ରାଜନୀତି, ଶିଳ୍ପ, ଶିକ୍ଷା, କୃଷି, ସ୍ୱାସ୍ଥ୍ୟ, ଧର୍ମ, ଦର୍ଶନ ଓ ନାନା ଶାସ୍ତ୍ରର ତତ୍ତ୍ୱ ପ୍ରକାଶ ପାଉଥିଲା । ଉପାଦେୟତା ଦୃଷ୍ଟିରୁ ତାହାର କେତେକାଂଶ ପାଦ୍ରୀମାନଙ୍କ ଦ୍ୱାରା ଅନୂଦିତ ହୋଇ ବିଲାତ ପଠା ହେଉଥିଲା ଏବଂ ସେଠାରେ ମଧ୍ୟ ତାହା ବାପ୍‌ଟିଷ୍ଟ ମିଶନାରୀ ଜର୍ଣ୍ଣାଲମାନଙ୍କରେ ପ୍ରକାଶ ପାଉଥିଲା । ମିଶନାରୀମାନେ ଭାଷା ଓ ଭାବରୁ ଅନୁବାଦ କରୁଥିଲେ । ସୁନ୍ଦର ବାବାଜୀଙ୍କର ଦ୍ୱୈତ ଅଦ୍ୱୈତ ଭାବ ନେଇ ସାଧୁ ସୁନ୍ଦର ଓ ମିଶନାରୀ-ମାନଙ୍କ ମଧ୍ୟରେ ବହୁ କୁଜିବର ପତ୍ର ଆଦାନ ପ୍ରଦାନ ହୋଇଥିଲା ।

୧୮୬୭ ମସିହାରେ ସଟନ୍‌ ସାହେବ କୁଜିବର ପତ୍ରକୁ ଇଂରାଜୀରେ ଅନୁବାଦ କରି ବିଲାତକୁ ପଠାଇଥିଲେ । କୁଜିବର ପତ୍ର ଜରିଆରେ ସାଧୁ ସୁନ୍ଦର ମିଶନାରୀମାନଙ୍କୁ ଯାହା ପଚାରୁଥିଲେ, ତାହାର ଭାବାର୍ଥ ହେଉଛି : "ହେ ଅମୃତ ସନ୍ତାନଗଣ ! ତୁମ୍ଭେମାନେ ଈଶ୍ୱରଙ୍କ ଶକ୍ତି ଲାଭ କରିଅଛ, ଏ ଅନ୍ଧାର ସଂସାର ପାଇଁ କ'ଣ କରିଛ ? ମୁଁ ଗୋଟିଏ ଗରିବ ହିନ୍ଦୁ । ମୁଁ ତୁମ୍ଭମାନଙ୍କୁ ଧନସମ୍ପତ୍ତି କିଛି ମାଗୁ ନାହିଁ, କେବଳ ଏତିକି ପଚାରୁଛି – ଉତ୍କଳୀୟମାନଙ୍କୁ ଈଶ୍ୱର ନିୟମ ମାନି ଚଳିବାକୁ ହେଲେ କ'ଣ କରିବାକୁ ହେବ ଓ କିପରି ଶିକ୍ଷା ଦେବାକୁ ହେବ, ତାହାର ବ୍ୟବସ୍ଥା କରୁନାହାନ୍ତି କାହିଁକି ।" ତେଣୁ ଲୋକଙ୍କୁ ଆଧ୍ୟାତ୍ମିକ ପୁରୁଷ କରି ଗଢ଼ିବା ଓ ଆଦର୍ଶ ଜୀବନ ଧାରଣ ପାଇଁ କୁଜିବର ପତ୍ରର ଅବଦାନ ନ୍ୟୂନ ନୁହେଁ ।

Digitized by PPRACHIN, SOA

ସାଧୁ ସୁନ୍ଦର ଦାସ ଜଣେ ସଂସ୍କାରକ ଥିବା ପୂର୍ବରୁ ସୂଚିତ ହୋଇଛି । ସେ ଆଧ୍ୟାତ୍ମିକ ଓ ସାମାଜିକ ଉଭୟ କ୍ଷେତ୍ରରେ ସଂସ୍କାର ଚାହୁଁଥିଲେ । ତେଣୁ କୁଜିବର ପତ୍ରିକା ମାଧ୍ୟମରେ ଜଗନ୍ନାଥ ଧର୍ମର ସାରତତ୍ତ୍ୱ ସମ୍ପର୍କରେ ସୂଚନା ଦେଉଥିଲେ । ସ୍ୱୈର, ମିଥ୍ୟା, ପିତାମାତାଙ୍କ ପ୍ରତି ଅବମାନନା ଓ ନିର୍ଦ୍ଦୋଷକୁ ହତ୍ୟା କରୁଥିବା ବ୍ୟକ୍ତିମାନେ ଜଗନ୍ନାଥଙ୍କ ସେବକ ହେବା କିମ୍ବା ଜଗନ୍ନାଥ ଧର୍ମ ପାଇଁ ଗର୍ବ କରିବା ଉଚିତ କି ?

ଧର୍ମ ନାମରେ କୁସଂସ୍କାରକୁ ପ୍ରଶ୍ରୟ ଦେବା କୌଣସି ସମୟରେ ଉଚିତ ନୁହେଁ । ତେଣୁ ହିନ୍ଦୁ ଧର୍ମରେ ପ୍ରତିମା ପୂଜା କରିବା କିମ୍ବା ପୂଜା ନାମରେ ସର୍ବସ୍ୱ ଦାନ କରି ନିଃସ୍ୱ ହେବା ପ୍ରକୃତରେ ଘୋର ନିନ୍ଦନୀୟ ବିଷୟ । ତାଙ୍କର ଏହି ପରିକଳ୍ପନା ବ୍ରାହ୍ମସମାଜରେ ସମ୍ପୂର୍ଣ୍ଣ ଭାବେ କାର୍ଯ୍ୟକାରୀ ହୋଇପାରିଥିଲା । ଦୁଃଖୀକୁ ଦାନ କରିବା ବା ଜୀବମାନଙ୍କୁ ଦୟା କରିବା ପ୍ରତ୍ୟେକ ଧର୍ମର ସାରତତ୍ତ୍ୱ । ଖ୍ରୀଷ୍ଟାନ ଶାସକମାନଙ୍କୁ ଗରିବ ଦୁଃଖୀଙ୍କ କ୍ରନ୍ଦନ ଶୁଣିବା ପାଇଁ ସାଧୁ ସୁନ୍ଦର 'କୁଜିବର ପତ୍ର' ମାଧ୍ୟମରେ ନିବେଦନ କରୁଥିଲେ ।

ସେଇ ପ୍ରସଙ୍ଗରେ ମରହଟ୍ଟା ଓ ଇଂରେଜମାନଙ୍କ ଶାସନନୀତିର ତୁଳନାତ୍ମକ ବିଚାର କରି ଉଭୟଙ୍କ ଦୋଷ ଦୁର୍ବଳତା ପ୍ରଦର୍ଶନ କରିବାକୁ ସେ ପଶ୍ଚାତ୍‌ପଦ ହେଉ ନ ଥିଲେ । ମରହଟ୍ଟାମାନେ ଡକାୟତ ଥିଲେ । ମାତ୍ର ଇଂରେଜମାନଙ୍କ ଶାସନ ନୀତି କେବଳ ଶଠତାରେ ପରିପୂର୍ଣ୍ଣ । 'କୁଜିବର ପତ୍ର' କେବେ ହେଲେ ମନଭେଦୀ କଥା ପ୍ରକାଶ କରୁ ନ ଥିଲା । 'କୁଜିବର ପତ୍ର' ଯେପରି ସତ୍ୟାଶ୍ରୟୀ ଥିଲା ସେହିପରି ମିଥ୍ୟାକୁ ସର୍ବାଦୌ ବର୍ଜନ କରୁଥିଲା । ଏଥିପାଇଁ ଇଂରେଜମାନଙ୍କ ସହିତ ସାଧୁ ସୁନ୍ଦରଙ୍କ ମନୋମାଳିନ୍ୟ ଓ କାରାବରଣ ଆଦି ଘଟଣା ଘଟିଗଲେ ମଧ୍ୟ ସେ ଅଟଳ ରହିଥିଲେ । ସାଧୁ ସୁନ୍ଦରଙ୍କ ଏହି ଜୀବେଦୟା ନୀତି ପରବର୍ତ୍ତୀ ଯୁଗରେ ଗାନ୍ଧି ଦର୍ଶନର ଏକ ବିଶିଷ୍ଟ ଉପାଦାନ ଭାବରେ ଗୃହୀତ ହୋଇଥିଲା ।

Digitized by PPRACHIN, SOA

ଆଧ୍ୟାତ୍ମିକ ଚେତନାର ଅଭାବରେ ହିଁ ସମାଜରେ ବିଭିନ୍ନ ପ୍ରକାରର ବିଶୃଙ୍ଖଳା ଦେଖାଦିଏ । ନିୟମ ଓ ଶାସନରେ ଦଣ୍ଡବିଧିର ପ୍ରଚଳନ ଥିଲେ ମଧ୍ୟ ତାହା ମାନବର ଅନ୍ତଃକରଣରେ ପରିବର୍ତ୍ତନ ଆଣେ ନାହିଁ । ଆଧ୍ୟାତ୍ମିକ ଶିକ୍ଷା ମନରେ କିଛି ପ୍ରଭାବ ପକାଏ ଯିନା, ଶାସ୍ତି ବା ଦଣ୍ଡବିଧାନ ନୁହେଁ । ତେଣୁ ସାଧୁ ସୁନ୍ଦର ଇଂରେଜମାନଙ୍କ ଉଦ୍ଦେଶ୍ୟରେ କହିଛନ୍ତି, "ଚୋରକୁ ଧରି ଦଣ୍ଡ ଦେଉଅଛ, ଡକାୟତ-ମାନଙ୍କ ଦୋଷ ଦେଖି ଦଣ୍ଡ ଦେଉଅଛ, ତୁମ୍ଭମାନଙ୍କ ଆଦେଶରେ ନିମିଷକେ ସେନା ଗୁଡ଼ଣୀ ହୋଇପାରେ; କିନ୍ତୁ ଜନଗଣଙ୍କୁ ଈଶ୍ୱରଙ୍କ ବାଣୀ ଶିକ୍ଷା ଦେବାକୁ କାହିଁକି ନିୟମ କରୁନାହଁ ? ତୁମ୍ଭେମାନେ ଭଲ ଗଛର ଫଳ, ଈଶ୍ୱରଙ୍କ ବାଣୀ ମାନି ଚଳ । ପ୍ରଜାମାନଙ୍କୁ ସେହି ନିୟମରେ ଚଳିବାକୁ ବାଧ୍ୟ କର ।"

ଇଂରେଜମାନଙ୍କୁ ଏହି ପତ୍ରିକା ମାଧ୍ୟମରେ ସେ ଯେଉଁ ନିର୍ଦ୍ଦେଶ ଦେଇଛନ୍ତି, ତହିଁରୁ ସାଧୁ ସୁନ୍ଦରଙ୍କ ସଂସ୍କାର ମନୋଭାବ ସହିତ ନୂତନ ଚିନ୍ତାଧାରାର ପରିଚୟ ମିଳିଥାଏ । ଈଶ୍ୱରଙ୍କ ବାଣୀ ତଥା ଆଧ୍ୟାତ୍ମିକ ଶିକ୍ଷାକୁ ବାଧ୍ୟତାମୂଳକ କରିବାକୁ ଏକ ନିୟମ ପ୍ରଣୟନ ପାଇଁ ଏଥିରେ ଇଙ୍ଗିତ ଦିଆଯାଇଛି । ତେଣୁ ସାଧୁ ସୁନ୍ଦରଙ୍କ ଚିନ୍ତାଧାରାର ନୂତନ ଆଭିମୁଖ୍ୟ ସହଜରେ ପ୍ରଣିଧାନଯୋଗ୍ୟ । 'କୁଞ୍ଜବର ପତ୍ର'ର ଏହି ଆଂଶିକ ଆଲୋଚନାରୁ ଜଣାଯାଏ ଯେ ଏଥିରେ ଧର୍ମ, ଦର୍ଶନ, ଶିକ୍ଷା, ରାଜନୀତି ଆଦି ବିଭିନ୍ନ ବିଷୟ ପ୍ରଶ୍ନ ଛଳରେ ପ୍ରକାଶିତ ହେଉଥିଲା । ତେଣୁ ପାରମ୍ଭରୁ ଧରି (୧୮୩୮ ପର୍ଯ୍ୟନ୍ତ) ପ୍ରକାଶ ପାଉଥିବା ପତ୍ରିକାଟି ଶିଳ୍ପ, କୃଷି, ଶିକ୍ଷା, ସ୍ୱାସ୍ଥ୍ୟ ଓ ଶାସ୍ତ୍ର ତତ୍ତ୍ୱ ଆଦି ସବୁ ବିଷୟର ସମାହାରରେ ଏକ ବିଶିଷ୍ଟ ଗୁଣର ଅଧିକାରୀ ହୋଇ ପାରିଥିଲା, ଏଥିରେ ସନ୍ଦେହ ନାହିଁ ।

୧୮ଶ ଶତାବ୍ଦୀରେ ତାଙ୍କ ସମ୍ପାଦନାରେ 'କୁଞ୍ଜବର ପତ୍ର' ପ୍ରକାଶିତ ହେବା ଏକ ଗୌରବମୟ ଘଟଣା । କେବଳ ସମ୍ପାଦନାରେ ନୁହେଁ, ଲେଖକ ଭାବରେ ମଧ୍ୟ ତାଙ୍କର କିଛି କୃତି ଥିବା ଜଣାଯାଏ । ଯଦିଓ ସେଥିମଧ୍ୟରୁ ଅନେକ ଅପ୍ରକାଶିତ ରହିଛି; ତଥାପି ସେ ଗ୍ରନ୍ଥ

Digitized by PPRACHIN, SOA

ଚୌପଦୀ ଓ ମାଳିକା ଇତ୍ୟାଦି ରଚନା କରିଥିବା ସମ୍ବାଦ ମିଳେ । ସେ ଏକାଧାରରେ ସାହିତ୍ୟିକ ଓ ସମ୍ପାଦକ, ଯୋଗୀ, ଶିକ୍ଷାବିତ୍ ଓ ସଂସ୍କାରକ, ଦିବ୍ୟଦ୍ରଷ୍ଟା ଓ ବ୍ରହ୍ମଜ୍ଞ । ତାଙ୍କର ପ୍ରତିଭା ଓ ସାଧନା ପ୍ରତ୍ୟେକ ଉତ୍କଳୀୟଙ୍କ ପାଇଁ ପବିତ୍ର ଓ ଅନୁକରଣୀୟ । ସେ ଥିଲେ ଏକ ବିରାଟ ଅନୁଷ୍ଠାନ, ତାଙ୍କ ବ୍ୟକ୍ତିତ୍ୱ ଥିଲା ଗଙ୍ଗା ପରି ଏକ ପବିତ୍ର ତୀର୍ଥ, ଜନତା ପ୍ରତି ତାଙ୍କ ବାର୍ତ୍ତା ଥିଲା ଯଜ୍ଞକୁଣ୍ଡର ବିଭୂତି । ତାଙ୍କ ବ୍ୟକ୍ତିତ୍ୱ ଓ ମହତ୍ତ୍ୱ ବୁଝିବା ପାଇଁ ଅଧିକ ଗବେଷଣା ଲୋଡ଼ା । ଏହା ଆମର ସାଂସ୍କୃତିକ ଇତିହାସକୁ କେତେକାଂଶରେ ଉପାଦାନ ଯୋଗାଇବ ।

(ସୌଜନ୍ୟ : ଝଙ୍କାର ୩୧/୧୦)

ଅରବିନ୍ଦ ନଗର
କଟକ-୧୦



# ଦିବ୍ୟଦ୍ରଷ୍ଟା ସାଧୁ ସୁନ୍ଦର

ଶ୍ରୀ ପ୍ରିୟନାଥ ମହାପାତ୍ର

କୁଜୀବର କହିଲେ ସାଧୁ ସୁନ୍ଦର ଦାସଙ୍କ ନାମ ବଳେବଳେ ଆଖି ଆଗକୁ ଆସିଯାଏ । କୁଜୀବର ଆଶ୍ରମରୁ ସେ 'କୁଜୀବର ପତ୍ର' ନାମରେ ଏକ ହାତଲେଖା ଖବରକାଗଜ ପ୍ରକାଶ କରୁଥିଲେ । ଯଦିଓ ଓଡ଼ିଶାରେ ସମ୍ବାଦ ସାହିତ୍ୟର ଜନକ ଭାବରେ ଉତ୍କଳ ଦୀପିକାର ସମ୍ପାଦକ ଶତାବ୍ଦୀପୁରୁଷ ଗୌରୀଶଙ୍କର ନାମ ସ୍ମରଣୀୟ, ତାହାଙ୍କର ବହୁ ପୂର୍ବରୁ ପ୍ରକାଶ ପାଇଥିବା କୁଜୀବରପତ୍ରର ସମ୍ପାଦକ ସାଧୁ ସୁନ୍ଦର ଦାସ ଏ ଦିଗରୁ ଅଧିକ ଗୌରବର ଅଧିକାରୀ । କୁଜୀବର ପତ୍ର ଏକ ହାତଲେଖା ପତ୍ର ହେଲେ ମଧ୍ୟ ତାହା ଓଡ଼ିଶାର ପ୍ରଥମ ସମ୍ବାଦପତ୍ର

Digitized by PPRACHIN, SOA

ଭାବରେ ସ୍ୱୀକୃତ । ତେଣୁ ସାଧୁ ସୁନ୍ଦର ହେଉଛନ୍ତି ଏ କ୍ଷେତ୍ରରେ ପଥପ୍ରଦର୍ଶକ ।

ସାଧୁ ସୁନ୍ଦର ଏକାଧାରରେ ଥିଲେ ଜଣେ ସାଧକ, ତପସ୍ୱୀ, ସମାଜ ସଂସ୍କାରକ, ଶିକ୍ଷାପ୍ରେମୀ, ଜ୍ଞାନୀ, ପଣ୍ଡିତ ତଥା ଆଧ୍ୟାତ୍ମ ପୁରୁଷ । ଏହି ସାଧକ ପୁରୁଷଙ୍କ ଜୀବନୀ ଉପରେ ଏ ପର୍ଯ୍ୟନ୍ତ ବିଶେଷ ଭାବେ ଆଲୋକପାତ କରାଯାଇପାରି ନାହିଁ । ୧୭୨୦ ମସିହାରେ କଟକ ଜିଲ୍ଲାର କୁମାରପୁର ଗ୍ରାମର ସୂର୍ଯ୍ୟବଂଶୀୟ କ୍ଷତ୍ରିୟ କୁଳରେ ସେ ଜନ୍ମ ହୋଇଥିଲେ । ଜୀବନର ପ୍ରଥମ ଭାଗରେ ସେ ଆଠଗଡ଼ ରାଜାଙ୍କ ଅଧୀନରେ ଜଣେ ସୈନିକ ଭାବରେ କାର୍ଯ୍ୟ କରିଥିଲେ । ଦିନେ ଡାଳଯୋଡ଼ା ଜିଲ୍ଲାର ଜଙ୍ଗଲ ମଧ୍ୟରେ ଶିକାର କରୁଥିବା ସମୟରେ ଏକ ଅଲୌକିକ ଘଟଣାରେ ତାଙ୍କ ଜୀବନର ଗତିପଥ ବଦଳି ଯାଇଥିଲା । ତାଙ୍କଦ୍ୱାରା ଶରାହତ ହୋଇଥିବା ମୃଗୁଣୀଟି 'ରାମନାମ' ଉଚ୍ଚାରଣ କରି ପ୍ରାଣତ୍ୟାଗ କରିବା ଏବଂ ହିଂସା ପରିହାର କରି ସତ୍ୟ, ଧର୍ମ ମାର୍ଗରେ ଗତି କରିବା ପାଇଁ ତାଙ୍କୁ ଶୂନ୍ୟବାଣୀ ହେବା ଏକ ଆଶ୍ଚର୍ଯ୍ୟଜନକ ଘଟଣା ।

ଶୂନ୍ୟବାଣୀ ଶୁଣି ସାଧୁ ସୁନ୍ଦର ନିଜର ଧନୁଶର ଓ ଗୋଳା-ବାରୁଦ ଇତ୍ୟାଦି ସୈନିକର ଅସ୍ତ୍ର ପରିତ୍ୟାଗ କରି ଧାର୍ମିକ ଜୀବନ ଆରମ୍ଭ କରିଥିଲେ । କୁଜୀବର ନାମରେ ଖ୍ୟାତ ଏକ ବିରାଟ ବରଗଛ ତଳକୁ ସେ ନିଜର ସାଧନା ଭୂମି ଭାବରେ ବାଛି ନେଇଥିଲେ । ତପସ୍ୟା କରି ସିଦ୍ଧିଲାଭ କରିବା ପରେ ଶହ ଶହ ଲୋକ ଆସି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ସେ ଶିଷ୍ୟମାନଙ୍କ ସହ ବେଦ, ବେଦାନ୍ତ, ରାମାୟଣ, ମହାଭାରତ, ସାଂଖ୍ୟ ଦର୍ଶନ ଇତ୍ୟାଦି ଆଲୋଚନା କରୁଥିଲେ । ତାଙ୍କ ବାଣୀ ଥିଲା, "ସଂସାରରେ ସବୁ ଧର୍ମର ମୂଳମନ୍ତ୍ର ହେଉଛି ଏକ, ସଂସାରରେ ଏକମାତ୍ର ସତ୍ୟ ହେଉଛି ବ୍ରହ୍ମ ।" ଧର୍ମ କ୍ଷେତ୍ରରେ ସେ ଥିଲେ ଜଣେ ସମନ୍ୱୟବାଦୀ । ତାହାଙ୍କୁ ସେଥିପାଇଁ ଧର୍ମପିତା ବା Spiritual Father ବୋଲି କୁହାଯାଉଥିଲା ।

Digitized by PPRACHIN, SOA

ସାଧୁଙ୍କର ଉଦାର ମାନବବାଣୀ ଧର୍ମରେ ପ୍ରୀତ ହୋଇ ରାଜା ମହାରାଜାମାନେ ତାଙ୍କୁ ପ୍ରଚୁର ଧନ ସମ୍ପତ୍ତି ଦାନ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ; କିନ୍ତୁ ସାଧୁ ସେ ସବୁ ଗ୍ରହଣ କରି ନଥିଲେ । ସେ କହୁଥିଲେ "ସଂସାରରେ ଧନ ସମ୍ପତ୍ତି ତୁଚ୍ଛ, ତାହା ଅସ୍ଥାୟୀ । ଜ୍ଞାନ ଓ ବୁଦ୍ଧି ହିଁ ହେଉଛି ସର୍ବଶ୍ରେଷ୍ଠ ସମ୍ପତ୍ତି ।" ଶ୍ରୀକ୍ଷେତ୍ରରେ ଥିବା ମଠର ମହନ୍ତମାନେ ଐଶ୍ୱର୍ଯ୍ୟ ମଧ୍ୟରେ ଥାଇ କପରି ବିଳାସରେ ଦିନ କାଟୁଛନ୍ତି ସେଇ କଥାର ସେ ଉଦାହରଣ ଦେଉଥିଲେ ।

ସାଧୁ ସୁନ୍ଦରଙ୍କ କୁଞ୍ଜବର ଆଶ୍ରମଟି ସେତେବେଳେ ଥିଲା ଏକ ତୀର୍ଥକ୍ଷେତ୍ର । ଶହ ଶହ ଲୋକ ତାଙ୍କୁ ଦର୍ଶନ କରିବାକୁ ଯାଉଥିଲେ । ୧୮୨୬ ମସିହାରେ ଖ୍ରୀଷ୍ଟିୟାନ ପାଦ୍ରୀ ରେଭରେଣ୍ଡ ଆମୋସ ସଟନ କୁଞ୍ଜବରଠାରେ ସାଧୁଙ୍କୁ ସାକ୍ଷାତ କରିଥିଲେ ବୋଲି ଲେଖିଛନ୍ତି । ସେତେବେଳେ ସାଧୁ ସୁନ୍ଦର ଅତି ବୁଢ଼ା ହୋଇ ଯାଇଥିଲେ ମଧ୍ୟ ସଟନ ସାହେବ ତାଙ୍କର ବୟସ ପ୍ରାୟ ୫୦ ହେବ ବୋଲି ଅନୁମାନ କରିଥିଲେ । ଏହି ଅନୁମାନ ଯଦି ସତ୍ୟ ହୁଏ ତେବେ ସାଧୁ ସୁନ୍ଦରଙ୍କର ଜନ୍ମ ୧୭୭୫ ମସିହା ପାଖାପାଖି ହେବା କଥା । ସାଧୁ ସୁନ୍ଦରଙ୍କ ଜନ୍ମକାଳ ସମ୍ପର୍କରେ ଭିନ୍ନ ମତ ରହିଛି । ତାଙ୍କର ଜନ୍ମ ୧୭୨୦ ଏବଂ ସେ ୧୧୮ ବର୍ଷ ବଞ୍ଚି ୧୮୩୮ରେ ସମାଧି ଗ୍ରହଣ କରିଥିଲେ ବୋଲି ଜୀବନୀକାରମାନେ ଉଲ୍ଲେଖ କରିଛନ୍ତି । ଏଥିରେ ପ୍ରାମାଣିକତାର ଅଭାବ ରହିଛି । ତେବେ ତାଙ୍କ ତିରୋଧାନ ଦିବସର ସ୍ମାରକୀ ସ୍ୱରୂପ ପ୍ରତିବର୍ଷ ବୈଶାଖ ମାସ କୃଷ୍ଣପକ୍ଷ ସପ୍ତମୀ ତିଥିରେ ସମାଧି ପୀଠରେ ଏକ ଯଜ୍ଞ ଅନୁଷ୍ଠିତ ହେଉଛି । ତାଙ୍କ ଜୀବନକାଳରେ ସେ ନିଜେ ଏକ ବିରାଟ ଯଜ୍ଞ କରୁଥିଲେ । ତାହାକୁ ମହାଯଜ୍ଞ ବୋଲି କୁହାଯାଉଥିଲା ।

କୁଞ୍ଜବର ପତ୍ର ହେଉଛି ସାଧୁ ସୁନ୍ଦରଙ୍କର ଅମର କୃତି । ପ୍ରଥମ ହାତଲେଖା ଓଡ଼ିଆ ଖବରକାଗଜ ହିସାବରେ ତାହା ଇତିହାସରେ ଅବଶ୍ୟ ସ୍ମରଣୀୟ । ସେଥିପାଇଁ ସେହି ଦିବ୍ୟଦ୍ରଷ୍ଟା ପୁରୁଷଙ୍କ ନିକଟରେ ଏ ଜାତି କୃତଜ୍ଞ ।

ବଣ୍ଟଘର, ଚଣ୍ଡିଖୋଲ

●

Digitized by PPRACHIN, SOA

# ଆମ କୁଳଗୁରୁ ସୁନ୍ଦର ବାବା

**ଶ୍ରୀ ବ୍ରଜସୁନ୍ଦର ସାହୁ**

ସାଧୁ ସୁନ୍ଦର ଦାସ ସ୍ଥାମୀସ୍ଥଙ୍କେ ସୁନ୍ଦରବାବା ନାମରେ ଅଧିକ ପରିଚିତ । ସେ ଆମ ବଂଶର କୁଳଗୁରୁ ବା କୁଳଦେବତା । ତାଙ୍କ ଫଟୋକୁ ଘରେ ରଖି ଆମେ ଦେବତାଭଳି ପୂଜା କରୁ । ମୋର ଜେଜେବାପାଙ୍କର ପିତା ଅଗଣି ସାହୁ । ତାହାଙ୍କର ପିତା ଦେବଦୁଲ୍ଲଭ ସାହୁ ସେକାଳରେ ଥିଲେ ଶିକ୍ଷିତ, ଧନୀ ତଥା ଜମିଦାର । ତାହାଙ୍କର ପୂର୍ବପୁରୁଷ ମୋଗଲ ଓ ମରହଟ୍ଟା ଶାସନ କାଳରେ ଉଚ୍ଚ ରାଜକର୍ମଚାରୀ ଭାବରେ ନିଯୁକ୍ତ ହୋଇଥିଲେ । ସେମାନେ କଟକ ସହରର * କମ୍ପୁ ବଜାର (ବର୍ତ୍ତମାନର ବକ୍ସିବଜାର ଓ ମାଛୁଆ ବଜାର)ରେ ପଥରରେ କୋଠାଘର ନିର୍ମାଣ କରିଥିଲେ ।

ସେ ସମୟରେ କେହି କୋଠାଘର କଲେ ମରହଟ୍ଟା ବର୍ଗୀ, ମୋଗଲ ଓ ପଠାଣମାନେ ଲୁଟ କରୁଥିଲେ । ସେଥିପାଇଁ ଲୋକେ କୋଠାଘର କରିବାପାଇଁ ସାହସ କରୁ ନଥିଲେ । ତେଣୁ ସବୁଆଡ଼େ ଗୃହଘର ଥିଲା । କେବଳ ରାଜ କର୍ମଚାରୀ ଓ ଜମିଦାର ଶ୍ରେଣୀର ଲୋକେ କୋଠାଘର କରୁଥିଲେ ।

---

* ୧୮୭୧ ମସିହାରେ ସ୍ୱର୍ଗତ ଶ୍ୟାମସୁନ୍ଦର ସାହୁଙ୍କ ନାମରେ କରାଯାଇଥିବା ଏକ ରେଜିଷ୍ଟ୍ରାର୍ଡ଼ ଦଲିଲରେ (ଦଲିଲ ନଂ ୪୭୨, ୨୮ ଜୁନ, ୧୮୭୧) କମ୍ପୁ ବଜାରର ନାମ ଉଲ୍ଲେଖ ଅଛି । ମୋଗଲ-ମରହଟ୍ଟା ସିରଅଡ଼ରେ ଏହି ଅଞ୍ଚଳ ଥିଲା ବାଣିଜ୍ୟ କେନ୍ଦ୍ର । ସେତେବେଳେ ବର୍ତ୍ତମାନର ମାଲଗୋଦାମ ତିଆରି ହୋଇ ନଥିଲା । ମହାନଦୀ କୂଳ ମାତାମଠ ଥିଲା ଘାଟ ଏବଂ ଏଇଠାରେ ଡଙ୍ଗାରେ ମାଲ ଚଢ଼ା-ଉତୁରା କରାଯାଉଥିଲା । ମାତାମଠ ଘାଟରୁ ଜିନିଷପତ୍ର ଆଣି କମ୍ପୁବଜାର ଅଞ୍ଚଳରେ ଥିବା ବଡ଼ ବଡ଼ ଗୋଦାମଘରେ ରଖାଯାଉଥିଲା । ବ୍ୟବସାୟ କାରବାର ଯୋଗୁ ଅହରହ ଏହି ଅଞ୍ଚଳଟି କମ୍ପୁଥିବାରୁ ଲୋକକଥିତ ଭାଷାରେ ଏହାକୁ 'କମ୍ପୁବଜାର' ବୋଲି କୁହାଯାଉଥିଲା ।

Digitized by PPRACHIN, SOA

ସୁନ୍ଦର ବାବା ବା ମହାତ୍ମା ସାଧୁ ସୁନ୍ଦର ଦାସ କଟକ ଆସିଲେ ମାଗୁଣି ସାହୁଙ୍କ ଘରେ ରହୁଥିଲେ । ଏବେ ସେହି ଘର ଭାଇଭାଗରେ ସ୍ୱର୍ଗତ ହରମୋହନ ସାହୁଙ୍କ ପୁଅଙ୍କ ଭାଗରେ ପଡ଼ୁଛି । ସେହି ପୁରାତନ ଘରେ ଏକ ଛାପାଖାନା ଚାଲିଛି । ସୁନ୍ଦରବାବା କଟକ ଆସି ସେଇ ଘରେ ଥିବା ସମୟରେ ସହରରେ ପ୍ରଚାର ହୋଇ ଯାଉଥିଲା ଏବଂ ଲୋକମାନେ ଆସି ଘରର ଗ୍ରେଟ ଖିଡ଼କିବାଟେ ତାଙ୍କୁ ଦର୍ଶନ କରୁଥିଲେ ।

ମାଗୁଣି ସାହୁ ଓ ଅଗଣି ସାହୁଙ୍କର ସମ୍ପର୍କ ହେଉଛି ଶ୍ୱଶୁର-ଜ୍ୱାଇଁ ସମ୍ପର୍କ । ଅଗଣି ସାହୁ, ମାଗୁଣି ସାହୁଙ୍କର କନ୍ୟାକୁ ବାହା ହୋଇଥିଲେ । ଶୁଣାଯାଏ, ଅଗଣି ସାହୁଙ୍କର ପୂର୍ବ ସାତ ପୁରୁଷରେ ପୁତ୍ର ସନ୍ତାନ ଜାତ ହେଉ ନଥିଲେ । ସେମାନେ ପୋଷ୍ୟପୁତ୍ର ଗ୍ରହଣ କରୁଥିଲେ । ସେଥିପାଇଁ ଅଗଣିଙ୍କର ଶାଶୂ ଶ୍ୱଶୁର ଅର୍ଥାତ୍ ମାଗୁଣି ଏବଂ ତାଙ୍କ ପତ୍ନୀ ଭକ୍ତିର ସହ ସୁନ୍ଦର ବାବାଙ୍କୁ ପ୍ରାର୍ଥନା କରିଥିଲେ । ବାବାଙ୍କର ବରଦାନରେ ଅଗଣି ସାହୁଙ୍କର ୪ ପୁଅ ଓ ୩ କନ୍ୟା ଜାତ ହୋଇଥିଲେ । ସେହି କାରଣରୁ ବାବା କଟକ ଆସିଲେ ମାଗୁଣି ସାହୁଙ୍କ ଘରେ ରହୁଥିଲେ । ସାହୁ ଦମ୍ପତ୍ତି ଅତ୍ୟନ୍ତ ଭକ୍ତି ଓ ଆଦରର ସହ ତାଙ୍କର ସେବା କରୁଥିଲେ । ବାବା ତାଙ୍କର ଘରେ ଭୋଜନ କରନ୍ତି ଓ ବିଶ୍ରାମ ନିଅନ୍ତି, ଭକ୍ତ ଓ ଦର୍ଶକମାନଙ୍କ ସହ ଧର୍ମ ଚର୍ଚ୍ଚା କରନ୍ତି । ସେମାନଙ୍କର ସୁଖ ଦୁଃଖ ବୁଝନ୍ତି । ମାଗୁଣି ସାହୁଙ୍କର ଗୋଟିଏ ପୁତ୍ର ଅଚ୍ୟୁତାନନ୍ଦ କଟକ କଲେଜିଏଟ୍ ସ୍କୁଲରେ ସହକାରୀ ଶିକ୍ଷକ ଥିଲେ ।

ସୁନ୍ଦର ବାବାଙ୍କ ନିକଟରେ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିୟାନ ଇତ୍ୟାଦି କୌଣସି ଜାତିଭେଦ ନଥିଲା । ସେ ଧନୀ, ଦରିଦ୍ର ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖୁଥିଲେ । ଖ୍ରୀଷ୍ଟିୟାନ ପାଦ୍ରୀ ତଥା ଗୋରା ଅଫିସରମାନେ ତାଙ୍କୁ ବହୁତ ମାନୁଥିଲେ । ସାଧୁଙ୍କର ତାଙ୍କ ଶିଷ୍ୟ-ମାନଙ୍କ ପ୍ରତି ଯେଉଁ କେତୋଟି ଉପଦେଶ ଥିଲା, ତାହା ହେଉଛି—

(କ) ଈଶ୍ୱରଙ୍କୁ ଭକ୍ତି କରିବ

Digitized by PPRACHIN, SOA

(ଖ) ସେତେବେଳେ ସମସ୍ତ ମିଳିବ ଈଶ୍ବରଙ୍କୁ ପ୍ରାର୍ଥନା କରିବ । ଜୀବଜଗତ, ଜଡ଼ ଜଗତ ସମସ୍ତଙ୍କ ପାଇଁ ବିଭୁ ଆଶୀର୍ବାଦ ମିଳୁ, ଏଇ ପ୍ରାର୍ଥନା କରିବ ।

(ଗ) ନିଶାଦ୍ରବ୍ୟ ବର୍ଜନ କରିବ ।

(ଘ) ଭକ୍ତି ଓ ନିଷ୍ଠାର ସହ ଧର୍ମ ଯଜ୍ଞରେ ଯୋଗ ଦେବ ।

(ଙ) ହିଂସା, ରାଗ, ଦ୍ବେଷ ପରିହାର କରିବ ।

(ଚ) ସାଧୁ ଯେ କୌଣସି ଧର୍ମର ହୁଅନ୍ତୁ, ତାଙ୍କୁ ଭକ୍ତିର ସହ ପ୍ରଣାମ କରିବ ।

(ଛ) ରବିବାର ଦିନ ଆମିଷ ଖାଇବ ନାହିଁ । ଇତ୍ୟାଦି

ଶିଷ୍ୟମାନଙ୍କର ବଂଶଧରମାନେ ଏବେ ସୁଦ୍ଧା ରବିବାର ଦିନଟିକୁ ପବିତ୍ର ଦିବସ ଭାବେ ପାଳନ କରନ୍ତି । ଏହିଦିନ ଘରଦ୍ବାର ଧୋଇପୋଛି ସଫାସୁତୁରା କରାଯାଏ । ଆମିଷ ଭୋଜନ କରାଯାଏ ନାହିଁ । ଏଇଦିନ ବାବାଙ୍କୁ ସ୍ମରଣ କରି ତାଙ୍କ ପୂଜା କରାଯାଏ ।

ଆମ ପରିବାରରେ ବାବାଙ୍କ ନାମରେ ଯେଉଁ ବିଧିବିଧାନ ପାଳନ କରାଯାଏ, ସେଗୁଡ଼ିକ ହେଉଛି —

(୧) ଆମେ କୌଣସି ଅନ୍ୟ ଗୁରୁଙ୍କର ଆଶ୍ରୟ ନେଉ ନାହିଁ, କିମ୍ବା ତାଙ୍କଠାରୁ ମନ୍ତ୍ର ଗ୍ରହଣ କରୁନାହିଁ । ସୁନ୍ଦରବାବା ହେଉଛନ୍ତି ଆମର କୁଳଗୁରୁ । ଶିଖମାନେ ଯେପରି ଗୁରୁ ନାନକଙ୍କୁ ମାନନ୍ତି, ବାସ୍ବାବାଙ୍କ ଶିଷ୍ୟମାନେ ଯେପରି ବାସ୍ବାବାଙ୍କୁ ମାନନ୍ତି, ଅନୁକୂଳଚନ୍ଦ୍ରଙ୍କ ଭକ୍ତମାନେ ଯେପରି ଅନୁକୂଳଚନ୍ଦ୍ରଙ୍କୁ ଠାକୁରଭାବେ ମାନନ୍ତି, ସାଇବାବାଙ୍କ ଶିଷ୍ୟମାନେ ଯେମିତି ତାଙ୍କୁ ଭଗବାନ ବୋଲି ମାନନ୍ତି, ଆମେମାନେ ସେଇଭଳି ସାଧୁ ସୁନ୍ଦର ବାବାଜୀଙ୍କୁ ମାନୁ ।

(୨) ଆମେ ଦିନରେ ତିନଥର ବାବାଙ୍କୁ ପୂଜା କରୁ ବା ସ୍ମରଣ କରୁ । ପ୍ରାତଃରେ ଶଯ୍ୟାରୁ ଉଠିବା ପରେ, ସ୍ନାନ ପରେ ଏବଂ ସନ୍ଧ୍ୟାରେ ।

Digitized by PPRACHIN, SOA

(୩) ନବଜାତ ପିଲାମାନଙ୍କର କେଶ ପକାଇବା କାର୍ଯ୍ୟ ଆଗେ କୁମ୍ଭାବର ମଠରେ କରାଯାଉଥିଲା । ଏବେ ନିଜ ନିଜ ଘରେ ସେ କାର୍ଯ୍ୟଟି କରିଦେଇ କେଶତକ ନେଇ ସେଇ ପୀଠରେ ଉତ୍ସର୍ଗ କରି ଦିଆଯାଉଛି ।

(୪) ପ୍ରତ୍ୟେକ ମାଙ୍ଗଳିକ କାର୍ଯ୍ୟରେ ଆଗେ ବାବାଙ୍କୁ ସ୍ମରଣ କରାଯାଏ । ପୂଅ ଝିଅଙ୍କର ବାହାଘର ପୂର୍ବରୁ ମୃତ୍ତିକାକୁ ନେଇ ପୂଜା ଅର୍ଚ୍ଚନା ପୂର୍ବକ ବାବାଙ୍କ ସମାଧି ଉପରେ ଚଢ଼ାଯାଏ । ତା'ପରେ ଘରକୁ ଆଣି ବାହାଘର ସମୟରେ ତାକୁ ବର ବା କନ୍ୟା ମୁଣ୍ଡରେ ପିନ୍ଧନ୍ତି ।

(୫) ଅନ୍ୟ କୌଣସି ଦେବଦେବୀଙ୍କୁ ପୂଜା କରିବା ଆମ ପାଇଁ ବାରଣ ନ ଥିଲେ ମଧ୍ୟ ସବୁ କ୍ଷେତ୍ରରେ ଆମ ବଂଶରେ ଓ ପରିବାରରେ ବାବା ଅଗ୍ରପୂଜ୍ୟ ଅଟନ୍ତି । ବିଭାଘର ନିମନ୍ତ୍ରଣପତ୍ର ପ୍ରଥମେ ତାଙ୍କୁ ହିଁ ଉତ୍ସର୍ଗ କରାଯାଏ । ତାପରେ ଅନ୍ୟମାନଙ୍କୁ ବଣ୍ଟାଯାଏ ।

(୬) ହିନ୍ଦୁଧର୍ମର ପ୍ରଚଳିତ ପର୍ବପର୍ବାଣୀ ଆମ ପାଇଁ ବାଧ୍ୟତା-ମୂଳକ ନୁହେଁ । ତେବେ ସହରରେ କେହି କେହି କୌଣସି ପର୍ବ ପାଳନ୍ତି ।

(୭) କୁମ୍ଭାବର ମଠରେ ଅନୁଷ୍ଠିତ ହେଉଥିବା ମହାଯଜ୍ଞର ଚରୁ ଅନ୍ନକୁ ଶୁଖାଇ ଆମେ ନିର୍ମାଲ୍ୟ ଭଳି ବ୍ୟବହାର କରୁ ।

ବାବାଙ୍କ ସମାଧି ପୀଠରେ ଅକ୍ଷୟ ତୃତୀୟାର ୧୨ ଦିନ ଆଗରୁ ଯଜ୍ଞ ଆରମ୍ଭ ହୋଇ ଅକ୍ଷୟ ତୃତୀୟା ଦିନ ପୂର୍ଣ୍ଣାହୁତି ହୁଏ । ପ୍ରାୟ ୫୦ ହଜାର ଲୋକ ଏଥିରେ ଯୋଗ ଦିଅନ୍ତି ।

ମଠ ଅଧୀନରେ କୌଣସି ଚାଷଜମି ନାହିଁ । ବାବା ଧନ ସମ୍ପତ୍ତିକୁ ତୁଚ୍ଛ ଜ୍ଞାନ କରୁଥିଲେ । ସେଥିପାଇଁ ସେ ରାଜା ମହାରାଜା ବା ଧନୀ ଜମିଦାରଙ୍କଠାରୁ ଦାନ ଗ୍ରହଣ କରି ନ ଥିଲେ । ମୋର ଗୋସେଇଁବାପା ଶ୍ୟାମ ସୁନ୍ଦର ସାହୁ କୁମ୍ଭାବର ଗ୍ରାମରେ ୧୪ ଗୁଣ୍ଠ ଜମି ମଠକୁ ଦାନ କରିଛନ୍ତି । ସେ ଜମିର ଖଜଣା ଆମେ ଦେଉ ।

Digitized by PPRACHIN, SOA

ଜମିକୁ ଚୃଷ କରୁଥିବା ଚୃଷୀ ଯଙ୍କ ସମସ୍ତରେ ସେ ବାବଦରେ ଅଚୁଆଚୃଉଳ ମଠକୁ ଯୋଗାନ୍ତି । ସେହି ଚୃଉଳରେ ଅଭଡ଼ା ପଖାଳ ହୁଏ । ନୂତନ ମାଟି ଗଗରେ ଦହି ପଖାଳ ସହିତ ଶାଗ ଭକ୍ତମାନଙ୍କୁ ବଣ୍ଟାଯାଏ ।

କଟକର ଶଙ୍କରପୁର ଅଞ୍ଚଳରେ ଆମ ଜମି ଉପରେ ବାବାଙ୍କ ନାମରେ ଖଣ୍ଡେ ଘର ଥିଲା । ସେ ଘର ଓ ଜମି ବିକି ହୋଇଗଲା ପରେ ସେଇ ଅର୍ଥ ମଠକୁ ଦେଇ ଦିଆଯାଇଛି ।

ବାବା ଜଣେ ମହାମାନ୍ୟ ପୁରୁଷ ଥିଲେ । ତାଙ୍କ ସମ୍ପର୍କରେ ବହୁ ଅଲୌକିକ କାହାଣୀ ପ୍ରଚଳିତ ଅଛି । ମୁଁ ୪।୫ ବର୍ଷର ହୋଇଥିବା-ବେଳେ ଥରେ ନାଳରକ୍ତ ଝାଡ଼ାରେ ଆକ୍ରାନ୍ତ ହେଲି । ଅବସ୍ଥା ବହୁତ ଖରାପ ହୋଇପଡ଼ିଲା । ମୋର ବାପା ବନୋଦବହାରୀ ସାହୁ ସେତେବେଳେ କୁଜାଙ୍ଗ ମଠରେ ଥିଲେ । ଆଜକାଲି ଭଳି କୁଜାଙ୍ଗ ଗ୍ରାମକୁ ସେତେବେଳେ ରାସ୍ତାଘାଟର ସୁବିଧା ନ ଥିଲା । କଟକରୁ ଡଙ୍ଗାରେ ମହାନଦୀ ପାର ହୋଇ ଅପରପାର୍ଶ୍ୱକୁ ଯିବାକୁ ହେଉଥିଲା । ନଦୀରେ କଂକ୍ରିଟ୍ ପୋଲ ତିଆରି ହୋଇ ନ ଥିଲା । ରାତିରେ ମୋର ବାପା ମଠରେ ଶୋଇଥିବା ସମୟରେ ସୁନ୍ଦର ବାବା ସ୍ୱପ୍ନରେ ତାଙ୍କୁ ବେତରେ ପ୍ରହାର କରି କହିଲେ, "କାଲି ସକାଳୁ ଭୁରନ୍ତ ଘରକୁ ଫେରିଯାଅ । ପୁଅ ବେମାର ଅଛି । ତାର ଚିକିତ୍ସା କର ।"

ବାପା ଘରକୁ ଆସି ଦେଖିଲେ ସତକୁ ସତ ମୁଁ ସାଂଘାତିକ ବେମାର । ସେ ମୋର ଚିକିତ୍ସା କଲେ । ମୁଁ ଆରୋଗ୍ୟ ହେଲି ।

ମୋର ଜେଜେବାପା ଶ୍ୟାମସୁନ୍ଦର ସାହୁ ଓ ବୁଢ଼ୀମା ମାଧବୀ ସାହୁ ସୁନ୍ଦର ବାବାଙ୍କୁ ଖୁବ୍ ମାନୁଥିଲେ । ଏପରି ହେଲା ଯେ ୧୯୩୫ ମସିହାରେ ମହାଯଜ୍ଞର ପୂର୍ଣ୍ଣାହୁତି ଦିନ ବୁଢ଼ୀମା ଦେହତ୍ୟାଗ କଲେ ଓ ୪ ବର୍ଷ ପରେ ୧୯୩୯ ମସିହାରେ ମହାଯଜ୍ଞ ଆରମ୍ଭ ଦିନ ଜେଜେବାପା ପରଲୋକ ଗମନ କଲେ । ମୋର ପିତା ବନୋଦବହାରୀ ସାହୁ ଥିଲେ ଜଣେ ଡାକ୍ତର । ଆମ ବଂଶର ପରମ୍ପରା ଅନୁଯାୟୀ ସେ ମଧ୍ୟ ଥିଲେ ବାବାଙ୍କର ପରମ ଭକ୍ତ । ୧୯୬୧ ମସିହାରେ ଲକ୍ଷ୍ମୀପୂଜା

Digitized by PPRACHIN, SOA

ହନ ତାଙ୍କର ପରଲୋକ ଘଟିଲା । ମୃତ୍ୟୁର କିଛି ସମୟ ପୂର୍ବରୁ ସେ କହିଲେ, "ମୋତେ ଶୀଘ୍ର ନେଇ ବାବାଙ୍କ ଫଟୋ ତଳେ ଶୁଆଇ ଦିଅ ।" ଆମେ କାଳ ବିଳମ୍ବ ନ କରି ତାଙ୍କୁ ନେଇ କାନ୍ଥରେ ଝୁଲୁଥିବା ଫଟୋ ତଳେ ଚଟାଣରେ ଶୁଆଇ ଦେଲୁ । ପାଞ୍ଚ ମିନଟ୍ ମଧ୍ୟରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ଏଇଭଳି ବହୁ କ୍ଷେତ୍ରରେ ଆମେ ବାବାଙ୍କର କଲ୍ୟାଣ ଓ ଆଶୀର୍ବାଦ ଲାଭ କରିଛୁ, ତାଙ୍କର ସ୍ୱର୍ଗୀୟ ସ୍ପର୍ଶ ଅନୁଭବ କରିଛୁ । କୁଞ୍ଜବିହାରଠାରେ ତାଙ୍କ ସମାଧି ଉପରେ ଥିବା ପଥର ଖଣ୍ଡିକ ବଢୁଛି ବୋଲି ଭକ୍ତମାନଙ୍କର ବିଶ୍ୱାସ । କାରଣ ପ୍ରତିବର୍ଷ ଯଜ୍ଞ ସମୟରେ ରୂପାର ଯେଉଁ କମରପଟିଟି ସ୍ମୃତି ଘଟରେ ପିନ୍ଧାଇ ଦିଆଯାଏ, ତା'ହା କ୍ରମେ ଛୋଟ ହୋଇ ଯାଉଥିବାର ଦେଖାଯାଉଛି । ମୋର ମାନସିକ ବୈରାଗୀଚରଣଙ୍କ ମାର୍ଫତରେ ଏଇ ପଟିଟିକୁ କେତେଥର ଯୋଡ଼ାଯାଇ ଅଧିକ ଲମ୍ବ କରାଯାଇଛି ।

ବାବା ଆଜି ସଶରୀରେ ଆମ ଭିତରେ ନାହାନ୍ତି ସତ; କିନ୍ତୁ ତାଙ୍କ କଲ୍ୟାଣମୟ ଅମୃତ ଦୃଷ୍ଟି ଆମ ଉପରେ ବରାବର ଅଛି ବୋଲି ଆମର ବିଶ୍ୱାସ ।

ଅବସରପ୍ରାପ୍ତ ଡେପୁଟି ସେକ୍ରେଟେରି
ଅର୍ଥ ବିଭାଗ, ଓଡ଼ିଶା ସରକାର
ବକ୍ସିବଜାର, କଟକ



# ସାଧୁ ସୁନ୍ଦରଙ୍କ ସାଧନା ପୀଠ

ଶ୍ରୀ ଦୈତ୍ୟାରି ଶୁକ୍ଳ

ଚୌଦ୍ୱାରର ଉତ୍ତରକୁ ପ୍ରାୟ ୫ କିଲୋମିଟର ଦୂରରେ କୁଶାବର ଗ୍ରାମ ଅବସ୍ଥିତ । ଏହି ଗ୍ରାମରେ ଅଛି ସାଧୁ ସୁନ୍ଦର ଦାସଙ୍କ ସମାଧି ମନ୍ଦିର । ସ୍ଥାନୀୟ ଲୋକେ ତାହା 'ସୁନ୍ଦର ମଠ' ନାମରେ ପରିଚିତ । ସେଇ ସ୍ଥାନରେ ମହାତ୍ମା ସୁନ୍ଦର ଦାସ ସମାଧି ଗ୍ରହଣ କରିଥିଲେ ଏବଂ ତାହା ହିଁ ଥିଲା ତାଙ୍କର ସାଧନା ପୀଠ । ୧୮୨୭ ମସିହାରେ ସଟନ ସାହେବ ସାଧୁଙ୍କ ସହିତ ସାକ୍ଷାତ୍ କଲାବେଳେ ସେଠାରେ ଏକ ବିରାଟ ବଟବୃକ୍ଷ ଶାଖା ପ୍ରଶାଖା ବିସ୍ତାର କରି ଦଣ୍ଡାୟମାନ ଥିଲା ଏବଂ ସାଧୁ ତାହାର ତଳେ ବସି ଶିଷ୍ୟମାନଙ୍କୁ ଶିକ୍ଷା ପ୍ରଦାନ କରୁଥିଲେ ବୋଲି ଉଲ୍ଲେଖ କରିଛନ୍ତି । ସେହି ବୃକ୍ଷଟିର ଏବେ ଆଉ ସତ୍ତା ନାହିଁ; ମାତ୍ର ସେଇ ସ୍ଥାନରେ ସାଧୁଙ୍କର ସମାଧି ଉପରେ ଏକ କ୍ଷୁଦ୍ର ମନ୍ଦିର ନିର୍ମାଣ କରାଯାଇଛି । ସମ୍ଭବତଃ ସେହି ବରଗଛଟିର ନାମ ଅନୁସାରେ ଗ୍ରାମଟିର ନାମକରଣ କରାଯାଇଛି ।

ମଠର ଦକ୍ଷିଣ ପାର୍ଶ୍ୱରେ ଏକ ଶୀର୍ଣ୍ଣ ଜଳସ୍ରୋତ ବହିଯାଉଛି ; ତାହା ଗନ୍ଧନଦୀ ନାମରେ ପରିଚିତ । କପିଳାସ ଓ ଗନ୍ଧମାର୍ଦ୍ଦନ ଉଭୟର ଦକ୍ଷିଣ ପାର୍ଶ୍ୱରୁ ଦୁଇଟି ଝରଣା ଝରିଆସି ତାହା ଡାଳଯୋଡ଼ାଠାରେ ଏକତ୍ର ହୋଇ ତଳକୁ ଗନ୍ଧନଦୀ ନାମ ଧରି ବହି ଆସିଛି । ମଠ ନିକଟସ୍ଥ ଘାଟଟି ପୁରାଣ ଯୁଗର କୃଷ୍ଣାବେଣୀ ତୀର୍ଥ ବୋଲି କୁହାଯାଏ । ପ୍ରାଚୀନ ଚୌଦ୍ୱାର ବା 'ବିରାଟ କଟକ' ଥିଲା ମହାଭାରତ ଯୁଗର ବିରାଟ ନଗର ଏବଂ ପାଣ୍ଡବଙ୍କ ବନବାସ ସମୟରେ ବିରାଟରାଣୀ ସୁଦେଷ୍ଣାଙ୍କ ସହିତ ପାଣ୍ଡବପତ୍ନୀ ସୈରିନ୍ଧ୍ରୀ ଏଠାରେ ସ୍ନାନ କରୁଥିଲେ ବୋଲି ଲୋକେ ବିଶ୍ୱାସ କରନ୍ତି । ମଠର ପଶ୍ଚିମ ପାର୍ଶ୍ୱକୁ ଦୃଷ୍ଟିପାତ କଲେ ଚତୁର୍ଦ୍ଦିଗରେ ପ୍ରାଚୀର ଭଳି ସୁଉଚ୍ଚ ହୁଡ଼ା

Digitized by PPRACHIN, SOA

ପରିବେଷ୍ଟିତ ଏକ ବିସ୍ତୀର୍ଣ୍ଣ ନିମ୍ନଭୂମି ଦେଖାଯାଏ । ଅତୀତରେ ଏହା ଏକ ହ୍ରଦ ବା ଜଳପାଠ ଥିବାର ଅନୁମାନ କରାଯାଏ । ଏବେ ତାହା ଶୁଷ୍କ କୃଷିଜମିରେ ପରିଣତ ହୋଇଛି । ଜନଶ୍ରୁତି ଅନୁଯାୟୀ ପୁରାଣ ଯୁଗର ରାଜା ଜନ୍ମେଜୟ ଅନାବୃଷ୍ଟି ଜନିତ ଦୁର୍ଭିକ୍ଷରୁ ନିଜର ପ୍ରଜା-ମାନଙ୍କୁ ରକ୍ଷାକରିବା ନିମନ୍ତେ ସେବକ ସାରଙ୍ଗଧର ପଡ଼ିଆରିଙ୍କ ତତ୍ତ୍ୱାବଧାନରେ ଏଠାରେ ଗୋଟିଏ ପୁଷ୍କରିଣୀ ଖୋଳାଇଥିଲେ । କାଳକ୍ରମେ ଏଇଟି ପଡ଼ିଆରି ପୁଷ୍କରିଣୀ ନାମରେ ପରିଚିତ । ପୋତି-ହୋଇ ପଡ଼ିଥିବା ସେହି ପୁଷ୍କରିଣୀର ପୂର୍ବପାର୍ଶ୍ୱ ହୁଡ଼ା ଉପରେ କୁଞ୍ଜବର ମଠ ବା ସାଧୁ ସୁନ୍ଦରଙ୍କ ସମାଧିପୀଠ ଅବସ୍ଥିତ । ଚକ୍ଷୁ ପଡ଼ିଲେ ଏଇଟି ଗୋଟିଏ ମାଟି ପଥରର ସ୍ତୂପ ଉପରେ ନିର୍ମିତ ହୋଇଥିବା ଭଳି ଦେଖାଯାଏ ।

ମଠର ଚତୁଃପାର୍ଶ୍ୱରେ ଆମ୍ବ, ବର, ସାହାଡ଼ା, ଚକୁଣ୍ଡା, କଦମ୍ବ, ନିମ୍ବ, ଆତ, ବେଲ ଓ ବଉଳ ଇତ୍ୟାଦି କେତେ ପ୍ରକାର ବୃକ୍ଷ ସ୍ଥାନଟିକୁ ବେଶ୍ ଛାୟା ଶୀତଳ ଓ ମନୋରମ କରିଥାଏ । ଗତ ମହାବାତ୍ୟାରେ ଏଗୁଡ଼ିକ ନଷ୍ଟଭ୍ରଷ୍ଟ ହୋଇଯିବାରୁ ସ୍ଥାନଟିର ରମଣୀୟତା କ୍ଷୁଣ୍ଣ ହୋଇଛି । ସୁଉଚ୍ଚ ସ୍ଥାନରେ ଅବସ୍ଥିତ ସାଧୁଙ୍କର ସମାଧି ମନ୍ଦିରଟି ବେଶ ପ୍ରାଚୀନ ମନେହୁଏ । ୧୮୩୮ରେ ସାଧୁଙ୍କ ମୃତ୍ୟୁ ପରେ ତାହାଙ୍କର ଶିଷ୍ୟମାନଙ୍କ ଉଦ୍ୟମରେ ଏଇଟି ନିର୍ମାଣ କରାଯାଇଥିଲା । ତେଣୁ ମନ୍ଦିରଟିର ଆୟୁଷ ଦେଢ଼ଶହ ବର୍ଷରୁ ଅଧିକ ଅଟେ । ମନ୍ଦିରଟି ପଞ୍ଚମୁଖୀ ଅଟେ । ଅର୍ଥାତ୍ ସମାନ ଭାବରେ ଏହାର ଚତୁର୍ଦ୍ଦିଗରେ ୫ଟି ଦ୍ୱାର ଅଛି । ପଞ୍ଚ 'ମ'କାରକୁ ପରିତ୍ୟାଗ କରିବା ଥିଲା ସାଧୁଙ୍କର ପ୍ରଧାନ ଉପଦେଶ । ଶିଷ୍ୟମାନଙ୍କ ମତରେ ସେଇ କାରଣରୁ ଏହାକୁ ପଞ୍ଚମୁଖୀ କରାଯାଇଛି । ମନ୍ଦିରର ଚୂଡ଼ାରେ ଏକ ଚକ୍ରଚିହ୍ନ ମଧ୍ୟରେ କ୍ରୁଶ ଚିହ୍ନ ରହିଛି । ତାହା ଉପରେ ପତାକା ଉଡୁଛି । ବାବା ସର୍ବ-ଧର୍ମର ସମନ୍ୱୟରେ ବିଶ୍ୱାସ କରୁଥିଲେ । ବିଶେଷକରି ସେ ଓଡ଼ିଶାର ଖ୍ରୀଷ୍ଟଧର୍ମ ପ୍ରଚାରର ନିୟାମକ ଥିଲେ । ସେ ଖ୍ରୀଷ୍ଟଧର୍ମ ଗ୍ରହଣ କରି-ନଥିଲେ ମଧ୍ୟ ଖ୍ରୀଷ୍ଟଧର୍ମର ପ୍ରଚାରକମାନେ ସାଧୁଙ୍କ ସହିତ ବହୁ ତାତ୍ତ୍ୱିକ

Digitized by PPRACHIN, SOA

ଆଲୋଚନା କରୁଥିଲେ । ତାଙ୍କ ମତବାଦ ସହିତ ଖ୍ରୀଷ୍ଟଧର୍ମର ଆଦର୍ଶର ବହୁ ସାମଞ୍ଜସ୍ୟ ଥିଲା । ତେଣୁ ତାଙ୍କୁ ମିଶନାରୀମାନେ ଯୀଶୁଙ୍କର ଅବତାର ବୋଲି କହୁଥିଲେ ।

ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଭଣ୍ଡାର ଘର । ଏହା ସମ୍ପୂର୍ଣ୍ଣ ଜୀର୍ଣ୍ଣ, ବ୍ୟବହାର ଉପଯୋଗୀ ନୁହେଁ । ତାହାର ସଂଲଗ୍ନରେ ଦୁଇ ବଖରା ପକ୍କା ଘର ନିର୍ମିତ ହୋଇଛି । ସେଇଠାରେ ରହନ୍ତି ଜଣେ ସେବକ ବାବାଜୀ । ମଠର କୌଣସି ସ୍ଥାୟୀ ଆୟ ନଥିବାରୁ ସେ ଭିକ୍ଷା କରି ମନ୍ଦିରର ନୀତି ସମ୍ପାଦନ କରନ୍ତି । ଉତ୍ତର ପାର୍ଶ୍ୱରେ ଯଜ୍ଞବେଦୀ । ତା ଉପରେ ଥିବା ଅସ୍ଥାୟୀ ଗୁହଟି ବାତ୍ୟାରେ ନଷ୍ଟ ହୋଇଯାଇଛି ।

ମନ୍ଦିରର ମୁଖ୍ୟଦ୍ୱାର ବା ପ୍ରବେଶ ପଥ ପୂର୍ବ ଦିଗରେ ଅବସ୍ଥିତ । ତଳକୁ ତଳ ଲମ୍ବି ଯାଇଛି ବାଇଶି ପାହାଚ । ବାଇଶି ପାହାଚ ତଳେ ଏକ ଅଗଣା । ତାର ମଧ୍ୟଭାଗରେ ପଥର ନିର୍ମିତ ଚଉତରା ଉପରେ ଏକ ବିରାଟ ଚଉରା । ଚଉରାର ବାମ ପାର୍ଶ୍ୱରେ ଗୋଟିଏ ବଉଳ ଗଛ । ଏଇଟି ବହୁ ପ୍ରାଚୀନ ବୋଲି ମନେହୁଏ । ଚଉରାର ଉତ୍ତର ପାର୍ଶ୍ୱରେ ଇଳତାକୁଣ୍ଡ ନାମରେ ଗୋଟିଏ କ୍ଷୁଦ୍ର ପୁଷ୍କରିଣୀ; ତା ନିକଟରେ ପ୍ରସ୍ତର ନିର୍ମିତ ହୋଳବେଦି । ଇଳତା କୁଣ୍ଡର ଜଳ କେବଳ ସେବେଇ କାର୍ଯ୍ୟରେ ବ୍ୟବହୃତ ହୁଏ । ତେଣୁ ଏଥିରେ ସ୍ନାନ, ଶୌଚ, ଦାନ୍ତଘଷା, ଗୋଡ଼ଧୁଆ ଓ ବାସନ, ଲୁଗାପଟା ସଫା ଇତ୍ୟାଦି କାର୍ଯ୍ୟ ନିଷିଦ୍ଧ । ଇଳତା କୁଣ୍ଡର ମହିମା ଲୋକମୁଖରେ ସୁପ୍ରଚଳିତ ।

ସାଧୁ ଯେଉଁ ବୈଦିକ ବନବିଦ୍ୟାଳୟଟି ପ୍ରତିଷ୍ଠା କରିଥିଲେ ତାହାର କୌଣସି ସତ୍ତା ଏଠାରେ ନାହିଁ । ମନ୍ଦିର ପାଦଦେଶରେ ୧୯୫୦ ମସିହାରୁ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଛି ।

ମନ୍ଦିର ମଧ୍ୟରେ ସାଧୁଙ୍କର ସମାଧି ବିଦ୍ୟମାନ । ସମାଧି ଉପରେ ସ୍ଥାପନ କରାଯାଇଥିବା ମୁଗୁନିପଥର ଖଣ୍ଡରେ ଗୋଟିଏ ରନ୍ଧ୍ର ଅଛି । ତାହାକୁ ନାଶା ବୋଲି କୁହାଯାଏ । ସେଇ ରନ୍ଧ୍ରରେ ଭକ୍ତମାନେ କୁଶପାତ୍ରୀ ଦ୍ୱାରା କ୍ଷୀର ଢାଳନ୍ତି । ଲୋକବିଶ୍ୱାସ ଯେ ଯାହାର ସମର୍ପିତ କ୍ଷୀର ରନ୍ଧ୍ରବାଟେ ଶୋଷି ହୋଇଯାଏ, ତାର ମନସ୍କାମନା

Digitized by PPRACHIN, SOA

ପୂର୍ତ୍ତି ହୁଏ । ଲୋକମାନେ ବିଶେଷକରି ପୁତ୍ର ସନ୍ତାନ କାମନା କରି ଏଠାକୁ ଆସନ୍ତି ।

ସାଧୁ ଜୀବନ୍ତ ସମାଧି ଗ୍ରହଣ କରିଥିବାରୁ କୁହାଯାଏ । ସେ ପ୍ରତ୍ୟହ କୃଷ୍ଣାବେଣୀ ବା ଗନ୍ଧନଦୀରେ ସ୍ନାନ କରି କେବଳ ବେଲପତ୍ର ଓ ତୁଳସୀ ପତ୍ର ସେବନ କରି ଜଳପାନ କରୁଥିଲେ । ସିଦ୍ଧିଲାଭ ପୂର୍ବରୁ ତପସ୍ୟା କାଳରେ କେବଳ ଏହାହିଁ ଥିଲା ତାଙ୍କର ଆହାର । ଏ ସମ୍ପର୍କରେ ସାଧୁଙ୍କର ମୁଖ ନିଃସୃତ ବାଣୀ ବୋଲି ଶିଷ୍ୟମାନଙ୍କଠାରୁ ନିମ୍ନ ପଦଟି ଶୁଣିବାକୁ ମିଳେ—

ବିଲ୍ୱପତ୍ର ଆଉ ତୁଳସୀ ପତ୍ରକୁ
ପ୍ରାତଃରୁ କରି ସେବନ,
ଗନ୍ଧନଦୀ ତଳେ ସ୍ନାନ ସାରି ମୁହିଁ
ଧରେ ସମାଧି ଆସନ ।
ଏହି ମତେ ଜାଣ କଟିଗଲା ମୋର
ଯୋଗରେ ପାଞ୍ଚ ବରଷ,
ପରମେଶ୍ୱରଙ୍କ ଆଶୀର୍ବାଦ ହେଲା
ଧ୍ୟାନ ମୋ ହୋଇଲା ଶେଷ ।

ସାଧୁଙ୍କ ଲିଖିତ କୌଣସି ଖଣ୍ଡିଏ ହେଲେ ପୋଥି ଏ ପର୍ଯ୍ୟନ୍ତ ଆବିଷ୍କାର କରାଯାଇ ନ ଥିବାରୁ ଏହା ଯେ ପ୍ରକୃତରେ ସାଧୁଙ୍କର ବାଣୀ, ତାହା ସହଜରେ ବିଶ୍ୱାସ କରିହୁଏ ନାହିଁ । ତେବେ ସମାଧି ଉପରେ ବେଲପତ୍ର ଓ ତୁଳସୀ ପତ୍ର ଅର୍ପଣ କରିବା ବିଧି ଏଠାରେ ପ୍ରଚଳିତ ଅଛି । ସିଦ୍ଧିଲାଭ ପରେ ସାଧୁ ସନ୍ଧ୍ୟା ପୂର୍ବରୁ ଭୋଜନ ସମାପନ କରୁଥିଲେ ।

କୁଞ୍ଜବିହାରୀ ମଠରେ ବୈଶାଖ ମାସରେ କରାଯାଉଥିବା ଯଜ୍ଞଟି ହେଉଛି ପ୍ରଧାନ ପର୍ବ । ସାଧୁ ସୁନ୍ଦର ଜୀବିତାବସ୍ଥାରେ ଏହି ଯଜ୍ଞଟି ଆରମ୍ଭ କରିଥିଲେ । ଏହାକୁ ମହାଯଜ୍ଞ କୁହାଯାଉଥିଲା । ଏବେ ପ୍ରତିବର୍ଷ ନିୟମିତ ବୈଶାଖ ମାସର କୃଷ୍ଣ ସପ୍ତମୀ ଦିନ ଯଜ୍ଞର ଶୁଭାରମ୍ଭ ହୋଇ ଅକ୍ଷୟ ତୃତୀୟା ଦିନ ପୂର୍ଣ୍ଣାହୁତି ଦିଆଯାଏ । ହଜାର ହଜାର ଲୋକ ଏଠାରେ ସମବେତ ହୁଅନ୍ତି । ଅରୁଆ ଅନ୍ନର ଦହି

Digitized by PPRACHIN, SOA

ପଖାଳ ଓ ଶାଗ, ପ୍ରସାଦ ସ୍ୱରୂପ ଭକ୍ତମାନଙ୍କୁ ବଣ୍ଟନ କରାଯାଏ । ପଖାଳରେ ଅଦା, କଞ୍ଚାଲଙ୍କା, ଜିରା, ଗୋଲମରିଚ, କାଗିଜି ଲେମ୍ବୁ, ପୋଦିନାପତ୍ର ଓ ସୈନ୍ଧବ ଲବଣ ଇତ୍ୟାଦି ମିଶାଇ ବେଶ୍ ସୁସ୍ୱାଦୁ କରାଯାଏ । ଠାକୁରଙ୍କର ସେବା ପାଇଁ କୌଣସି ଜମିବାଡ଼ି ଖଞ୍ଜା ଯାଇ ନଥିବାରୁ ଏଠାରେ ନିୟମିତ ଅନ୍ନ ପ୍ରସାଦର ବ୍ୟବସ୍ଥା ନାହିଁ । ପ୍ରତ୍ୟହ କେବଳ ଧୂପ ଦିଆଯାଏ, ଜଳ ତୁଳସୀ ଅର୍ପଣ କରାଯାଏ । ଭକ୍ତମାନେ ସମାଧି ଉପରେ କ୍ଷୀର ଢାଳନ୍ତି । ଏହି ଗ୍ରାମରେ ଥିବା ସାଧୁଙ୍କର ଶିଷ୍ୟମାନଙ୍କ ମଧ୍ୟରୁ କେତେକ ପୁରୁଷାନୁକ୍ରମେ ଶ୍ରଦ୍ଧା ଓ ଭକ୍ତିର ସହିତ ନିୟମିତ କ୍ଷୀର ଢାଳୁଛନ୍ତି ।

ସାଧୁ ସୁନ୍ଦର ଥିଲେ ଅଲୌକିକ ଶକ୍ତିର ଅଧିକାରୀ ଏବଂ ସେ ଅନେକ ଅଲୌକିକ କାର୍ଯ୍ୟ ସାଧନ କରିଥିବା କଥା ମିଶନାରୀମାନେ ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଛନ୍ତି । ସ୍ଥାନୀୟଭାବେ ବାବାଙ୍କୁ କେନ୍ଦ୍ର କରି ଏଇଭଳି ଅନେକଗୁଡ଼ିଏ କାହାଣୀ ପ୍ରଚଳିତ ଅଛି । ସମାଧି ଉପରେ ସ୍ଥାପନ କରାଯାଇଥିବା ପଥର ଖଣ୍ଡିକର ପରିଧି ପ୍ରତିବର୍ଷ ବୃଦ୍ଧି ପାଉଥିବାର ଭକ୍ତମାନେ କହନ୍ତି । ପ୍ରତିବର୍ଷ ଯଜ୍ଞ ସମୟରେ ପଥର ଚାରିପଟେ ରୂପାର ଯେଉଁ ପଟିଟି ଲଗାଯାଏ, ତାହା ଛେଟ ହୋଇ ଯାଉଥିବାର ଲକ୍ଷ୍ୟ କରାଯାଉଛି । ସେଥିପାଇଁ ସେଥିରେ ଅଧିକ ପଟି ଯୋଡ଼ି ଲମ୍ବା କରିବାକୁ ହେଉଛି ।

ସାଧୁ ସୁନ୍ଦର ଦାସଙ୍କର ବହୁଦିନୁ ତିରୋଧାନ ହୋଇଯାଇଛି । ସମାଧିପୀଠଟି ହେଉଛି ତାଙ୍କର ସ୍ମୃତିପୀଠ । ରକ୍ଷଣାବେକ୍ଷଣ ଅଭାବରୁ ଏହା ଅତ୍ୟନ୍ତ ଜୀର୍ଣ୍ଣ ଅବସ୍ଥାରେ ରହିଛି । ସାଧୁଙ୍କର ଆଦି ଶିଷ୍ୟଙ୍କର ବଂଶଧର କଟକର ବକ୍ସିବଜାର ଅଞ୍ଚଳର ସାହୁ ପରିବାର ମଠର ଯଥାସମ୍ଭବ ତତ୍ତ୍ୱାବଧାନ କରୁଛନ୍ତି; କିନ୍ତୁ ଆର୍ଥିକ ସମ୍ବଳର ଅଭାବରୁ ତାହା ଯଥେଷ୍ଟ ହେଉନାହିଁ । ମହାତ୍ମା ସାଧୁ ସୁନ୍ଦର ତାଙ୍କର ଶିଷ୍ୟମାନଙ୍କ ନିକଟରେ ଯେତିକି ସ୍ମରଣୀୟ, ଓଡ଼ିଶାର ଧର୍ମ, ସଂସ୍କାର, ସାହିତ୍ୟ, ଓ ସାମ୍ବାଦିକତା କ୍ଷେତ୍ରରେ ସାଧାରଣ ଲୋକଙ୍କ ନିକଟରେ ତତୋଧିକ ସ୍ମରଣୀୟ ଅଟନ୍ତି ।

ଅଧ୍ୟାପକ, ଓଡ଼ିଆ ବିଭାଗ
ଖ୍ରୀଷ୍ଟ କଲେଜ, କଟକ



Digitized by PPRACHIN, SOA

# The old Gooroo and his Disciples

**Rev Amos Sutton**

[ ଇଂଲଣ୍ଡର ଡର୍ଭି ଅଞ୍ଚଳରେ ଜନ୍ମଗ୍ରହଣ କରିଥିବା ମିଶିନାରି ସଟନ ଧର୍ମପ୍ରଚାରର ଉଦ୍ଦେଶ୍ୟରେ ୧୮୨୫ ମସିହାରେ ସସ୍ତ୍ରୀକ କଟକରେ ଆସି ପହଞ୍ଚିଥିଲେ । ଏଠାରେ ସେ ଦୀର୍ଘ ୨୯ ବର୍ଷ କାଳ ଅବସ୍ଥାନ କରି ୧୮୫୪ ମସିହା ଅଗଷ୍ଟ ମାସରେ ପ୍ରାଣତ୍ୟାଗ କରିଥିଲେ । କଟକର ପଶ୍ଚିମ ଭାଗରେ ଥିବା ଗୋରାକବରଠାରେ ତାଙ୍କୁ ସମାଧି ଦିଆଯାଇଛି । ଊନବିଂଶ ଶତାବ୍ଦୀର ଓଡ଼ିଆ ପାଠ୍ୟପୁସ୍ତକ ପ୍ରଣେତାମାନଙ୍କ ମଧ୍ୟରେ ସଟନଙ୍କ ନାମ ଉଲ୍ଲେଖଯୋଗ୍ୟ । ଓଡ଼ିଆ ବର୍ଣ୍ଣଶିକ୍ଷା, ବ୍ୟାକରଣ ଓ ଅଭିଧାନ ସମେତ ସେ ଅନେକଗୁଡ଼ିଏ ପୁସ୍ତକ ରଚନା କରିଥିଲେ । ୧୮୫୭-୫୮ର ବାର୍ଷିକ ଶିକ୍ଷା ରିପୋର୍ଟରେ ଓଡ଼ିଆ ଭାଷାରେ ପ୍ରକାଶିତ ଯେଉଁ ୨୬ ଖଣ୍ଡ ପାଠ୍ୟପୁସ୍ତକର ତାଲିକା ପ୍ରଦତ୍ତ ହୋଇଥିଲା, ସେଥି ମଧ୍ୟରୁ ୧୨ ଖଣ୍ଡ ପୁସ୍ତକ ସଟନଙ୍କ ଦ୍ୱାରା ରଚିତ ବୋଲି ଉଲ୍ଲେଖ ଥିଲା ।

ସାଧୁ ସୁନ୍ଦର ଦାସଙ୍କ ସହିତ ସଟନଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା ଓ ପରସ୍ପର ମଧ୍ୟରେ ଆଳାପ ଆଲୋଚନା ହୋଇଥିଲା । ସେ ସମ୍ପର୍କୀୟ ବିବରଣୀ ସେ ନିଜ ପ୍ରଣୀତ Orissa and its Evangelization ପୁସ୍ତକରେ ବର୍ଣ୍ଣନା କରିଛନ୍ତି । ପୁସ୍ତକଟି ୧୮୫୦ ମସିହାରେ ଲଣ୍ଡନରେ ପ୍ରକାଶିତ ହୋଇଥିଲା । ସେହି ପୁସ୍ତକର କିୟଦଂଶ ଏଠାରେ ଉଦ୍ଧାର କରାଗଲା । ]

—**ସମ୍ପାଦକ**

Oft disappointed by instances similar to the foregoing, the Orissa Missionaries still laboured on hoping against hope. At length a bright scene dawned on their delighted eyes, and hopes were raised which issued not in disappointment. An old Gooroo or spiritual guide to a number of devoted disciples, was the instrument, in the hands of God, of introducing us to our first convert at Cuttack.

Although the details of this event have appeared before yet from their connection with the progress of the gospel in

Digitized by PPRACHIN, SOA

Orissa, a brief outline deserves a place in the present chapter, and for various reasons the writer prefers transcribing an account already drawn up by himself and present to public in India.

Sunder Das was in early life a warrior under the Athgur Raja, one of the hill chieftains in Orissa. If ever he had been taught to read he soon lost the ability to do so. He was naturally a shrewd observer of men and things, and possessed a large share of what is called mother wit. He soon felt his superiority, though himself unlearned to his rustic associates; and assumed the character, first of a devotee and then of a spiritual guide. He knew how to make use of the learning of others and early enlisted into his service several of his disciples well versed in the writings of Khubeer (Kabir), Chaitany and especially of an Oriya reformer, in his own vicinity, who lashed the views of the age most unmercifully. The old man picked up a number of striking predictions respecting the speedy dawn of the golden age. Piety and peace were to pervade the earth; discord, falsehood and violence and fraud were to disappear; the cattle were to go and return from pasture without a shepherd or keeper; the fields were to need no hedge or embank ments; the people were to be clothed in silk and scarlet, and all were to live happy in the bonds of fraternal affection.

In this reformation he was to have a conspicuous share and Sahibs, who had just conquered Orissa, were to consult him as their spiritual guide. Our first acquittance with him he artfully represented as the commencement of this his spiritual reign.

At this period he taught his disciples to abstain from certain kinds of food, to bathe at certain hours, to live as brethern, regardless of the strict observance of caste, and especially to unite in the burnt offering of clarified butter, which he carried to a great extent. He also promoted night revels under the name of 'Sut-Sung' (ସତ୍ସଙ୍ଗ) or communion with the true.

Digitized by PPRACHIN, SOA

The following account of the Old Gooroo is from one of his disciples, Rama Chundra, whose memoir is given hereafter :

"Soon after this period I had an interview with Sundra babajee, and he gave me much instruction about the worship of script. Moreover Doharee Naik, Gungadhar Sorengee, Gunga Mohantee, Jugernath Patnaik, Gungadhar Biswal, Krupasindoo Saho, Rhado Das, Sundursun Rowte, Ramakrushna Das. Puramaswar Mul, Puraswa Mahapatra, Kartike Suil, and many other, very closely connected themselves with him. 'The commandments" he said "which I shall give you, you must not disobey them". He then commanded us to bathe twice a day, offer water to sun; eat on the second hour of the day, indulge our bodies with food and ease, doing little labor; and whatever we desired at any time that eat. But he forbade to use worm drink and tobacco, fish, flesh and oil. He commanded us to eat unwashed rice, and to sanctify the place of eating with ashes.

He told us to remain much under the influence of opium and other soothing drugs; to eat early in the morning, not to destroy beasts, animals, fish or birds or any thing that has life, not to cut down trees or shrubs, but to consider all things that have life as ourselves; and as one spirit; for that in all substances, and throughout all forms of materiality, Narayan dwells incarnate.

He forbade us to lie or steal, or commit adultery, to be angry, hypocritical, anxious, or hateful. We were also commanded to lay aside idol worship, pilgrimages, offerings, fastings, distinguishing marks, sacred thread and Mala. "All things he said, "are full of God; worship him. For hatred return not hatred, for prosecution porsecute not; for blows give not blows; spend no ones wealth and borrow money from no one. Love your wives and children as your own souls, reverence your

Digitized by PPRACHIN, SOA

parents. Take no one's goods on trust. Gave not false witness and cheat or defraud no one.

Without distinction salute all men; look upon aged people with the same respect as you do your parents; and if the poor and needy beg of you, give to them, and if not able to do that speak to him with kindness and respect."

In this manner he gave us much instruction. Teaching us he said, "this world will be destroyed, but they that hoping in God, keep his commandments, will be preserved. The true religion will be proclaimed and falsehood will disappear."

He moreover uttered many other prophetics and said, "My birth into this world is divine, though that is known to no one. I shall become the ruler and judge of all nations; Hindoos, Muslims and Pheringees; and other classes of men will regard me, both male and female will reverence me; for Boladah in the form of light, has entered into me."

"I shall destroy the load of sin which has accumulated in the world. There shall be no more war or noise or disagreement or malice or adultery or theft or lying or desease or sorrow or pain in the world any more.

"Wild beasts as tigers and bears, venomous reptiles as serpents as well all other vicious or injurious animals shall bear no more malice towards man; and the herds of cattle without a keeper shall return to their homes without destroying the cornfields of others. The clouds knowing their proper season shall give timely rain and the earth shall produce full and proper fruits. Into the hearts of mankind shall the Holy spirit be placed; and male and females clothed in silk and satin shall worship the Lord and sing his praises with joy, one loving the other all shall know the Lord."

Thus did he deliver to us many prophetic and our hearts believing his words greatly rejoiced and whatever he commanded us to do we carefully performed.

Digitized by PPRACHIN, SOA

We bathed in the morning, are unwashed rice, left off using flesh, fish, pana, smoke and oil, lies and theft and adultery we dreaded in our minds and we avoided the company of liars and malicious persons. We laid aside the worship of Mala (ମାଳା), the sandal marks and the poita (ପଇତା) and the idols that were in our houses. We plucked up in the Tulsee tree, left off pilgrimages, sacrifices and ancestorial shradha (ଶ୍ରାଦ୍ଧ) and no longer worshiped cows or Brahmins. We no longer eat prasad nor sung obscene songs to the sound of the Khunjunee (ଖଞ୍ଜଣୀ). We avoided the society of those who were litigious and quarrelsome and loving all men we worshiped spirit.

Thus we were obedient to Sundra Balajee."

× × ×

In October 1826, while we were at worship on the Sabbath a deputation arrived from the old Gooroo to ask our advice in a novel and interesting affair. It appears that he had appointed several of his leading disciples to promulgate his favourite Das-agya or ten commandments in the neighbouring villages and also to collect ghee for a large burnt offering. In the execution of their commission they got into trouble, were severely beaten and grievously abused and now they wished for advice how to proceed in seeking redress for their outrage.

Our conversation with these men was interesting and surprising; it revealed such an extensive acquinttance with our books and especially the gospels, united with so much correctness that, it drew forth alternate smiles and tears At length my senior colleague united with me in the determination to pay a visit to the Gooroo and talk the matter over fully. Accordingly next morning we set out upon our attractive journey. That day can never be obliterated from our memory. It was to us as the first dawn of the sun of righteousness upon this region and shadow of death. How did our hearts burn witnin us by the way and how did our aspirations rise to heaven. "Lord, send now prosperity".

Digitized by PPRACHIN, SOA

Our first interview with the Gooroo was to us interesting and affecting. He had prepared for our reception by spreading clothes under a wide-spreading banian-tree, and as soon as we arrived, hastened to greet us. He appeared to us about fifty years of age, rather below the middle stature, and some what corpulent. He was not besmared with ashes as is usual, but wore a chain round his waist to which was attached a shred of cloth. This way his only dress. His complexion was fair for a Hindoo and his countenance mild and prepossening. His smile played about his lips and vivacity sparkled in his eyes. He at once saluted us by prostrating himself at our feet, while we in return raised him up and shook him by the hand. Our preliminaries adjusted, we proceeded to business and soon branched off to general discussions respecting christianity.

The old man, though still bewildered in the mazes of mysteism and heathenism, yet possessed many correct view and made many striking remarks. He illustrated the folly of distinctions in caste by pointing first to the sun, then to clothes of various castes spread out to dry. These, he said, would be defilled by tauching each other, but the sun dried them all. He illustrated the death of christ by supposing the case of a criminal condemend to die, for whom another offered himself as a substitute. Referring to the New Testament he said to his disciples, "My children, there is truth and there is great truth. There are gifts of rice, of clothes and of wisdom. This is wisdom, the highest—rice decays, clothing perishes, but wisdom never dies. Take this my children, and let it be your guide; all the silver and gold in the world cannot purchase them."

He said many more things that gave us pleasure, and would have eaten or done any thing else with us involving a loss of caste, but this we forbore for the time.

Such was the old Gooroo. This interview ××× greatly excited our hopes, but he never embraced the gospel. Many of

Digitized by PPRACHIN, SOA

these we saw that day have since been added to the flock of the Saviour, as the first fruits to christ in Orissa. But the old teacher grew more and more averse to our mission. He indeed gave himself forth as an incarnation of Jesus Christ and tried thus to retain his spiritual power. He even appointed twelve apostles after the example of Christ. But he persecuted those who left him gradually, grew more mystical and died without any distinction— creed of any sort, excepting this : that he told his attendant disciples that he who made him had sent for him, and desired that his body might be buried in his house there it rests, and is worshiped by a few attached, but very ignorant disciples. His spirit has received its sentence from Him who judged right.

We cannot here present a detailed account of the several disciples of the old Gooroo, who sooner or later embraced christianity. Such details are furnished in the publications of the General Baptist Missionary Society, but the names of several of those first converts shall be briefly mentioned, and more lengthened account of one or two leading disciples be appended to this chapter.

●

Digitized by PPRACHIN, SOA

# A Letter from Sunder Das Bargee

[ସୁନ୍ଦର ଦାସଙ୍କ ଦ୍ୱାରା ପ୍ରସ୍ତୁତ ‘କୁଜିବର ପତ୍ର’ ବୋଲି କୁହାଯାଉଥିବା ଗୋଟିଏ ଚିଠିକୁ ସଟନ ସାହେବ ୧୮୨୭ ସାଲରେ ଇଂରାଜୀରେ ଅନୁବାଦ କରି ବିଲାତ ମିଶନକୁ ପଠାଇଥିଲେ । ଇଂରାଜୀ ଶାସକ ଓ ମିଶିନାରୀମାନଙ୍କ ଉଦ୍ଦେଶ୍ୟରେ ଏହି ଚିଠିଟି ଲେଖାଯାଇଥିଲା । ଚିଠିର ଇଂରାଜୀ ଅନୁବାଦଟି ଜେମସ ପେଗ୍ସ ତାଙ୍କ ପ୍ରଣୀତ ‘India's Cries to British Humanity’ (୧୮୩୦) ପୁସ୍ତକରେ ସଂଯୋଜିତ କରିଥିଲେ । ସେଇ ଅଂଶଟିକୁ ଏଠାରେ ଉଦ୍ଧାର କରାଯାଇଛି । ଏହାର ମୂଳ ଓଡ଼ିଆ ରୂପଟି କଅଣ ଥିଲା, ତାହା ଏବେ ଜାଣିବାର ଅବକାଶ ନାହିଁ । ତେବେ ଜୀବନୀ ଲେଖକ ସ୍ୱର୍ଗତ କୃଷ୍ଣମୋହନ ସାହୁ ଇଂରାଜୀ ଚିଠିଟିକୁ ‘କୁଜିବର ପତ୍ର’ ବୋଲି କହି ଯେଉଁ ରୂପରେ ପୁନରାୟ ଓଡ଼ିଆରେ ରୂପାନ୍ତର କରି ତାଙ୍କ ପୁସ୍ତକରେ ସନ୍ନିବେଶିତ କରିଥିଲେ, ତାହା ଏହି ସଂଖ୍ୟାର ୩୦-୩୨ ପୃଷ୍ଠାରେ ମୁଦ୍ରିତ ହୋଇଅଛି । —ସଂପାଦକ]

"O ye favoured people, who are blessed with the Divine spirit, ye have existed 1800 years, and what have ye done for this dark world ? I am a Hindu Baistub, poor and destitute, but ask of you neither land nor elephants, nor horses, nor money, nor palanqueen nor doolis; but I ask, what can be done to teach the people to obey the laws of God ? O holy people, this I ask.

"Pooree is the heaven of the Hindoos; yet there, the practices of mankind are adultery, theft, lies, murder of the innocent, whoremongery, eating fish with Mahaprasad, disobedience and abuse of parents, defiling of mothers, defiling of sisters, defiling of daughters. Such is the religion of Juggernaut; for these crimes the people are visited with rheumatism, swelling of the legs, leprosy, scrofulas, grievous sores and acute pains, blindness, and such like. Such are the servants of Juggernaut.

Digitized by PPRACHIN, SOA

